# ଭକ୍ତମାଳା

(୯ମ ଭାଗ)

ଉତ୍କଳ ସାହିତ୍ୟ ସମାଜ
କଟକ

ସଂପାଦନା
ଜାନକୀବଲ୍ଲଭ ମହାନ୍ତି, ଏମ୍. ଏ.

# ସୂଚନା

ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଏହି 'ଭକ୍ତମାଳ' ପୁସ୍ତକଟି ବରେଣ୍ୟ ଜନନାୟକ ତଥା ସାହିତ୍ୟିକ ଡକ୍‌ଟର ହରେକୃଷ୍ଣ ମହତାବଙ୍କର ଆର୍ଥିକ ପୃଷ୍ଠପୋଷକତା ଯୋଗୁହିଁ ଅଧୁନା ପ୍ରକାଶିତ ହେବା ସମ୍ଭବ ହେଲା । ତା'ଛଡ଼ା ଏହି ପୁସ୍ତକ ଲାଗି ଏକ ସୁଚିନ୍ତିତ ଭୂମିକା ଲେଖି ସେ ମଧ୍ୟ ଆମ୍ଭମାନଙ୍କୁ ଅନୁଗୃହୀତ କରିଅଛନ୍ତି । ଏଣୁ ସାହିତ୍ୟ ସମାଜ ପ୍ରତି ତାହାଙ୍କର ଏହି ସାହାଯ୍ୟ ଓ ସହଯୋଗକୁ ଆମ୍ଭେମାନେ ପରମ କୃତଜ୍ଞତା ଓ ବିନମ୍ରତାର ସହିତ ସ୍ୱୀକାର କରୁଅଛୁ ।

ଡକ୍‌ଟର ମହତାବ ବମ୍ବେର ଗଭର୍ଣ୍ଣର ଥିବା ସମୟରେ ଓଡ଼ିଶାର ଭକ୍ତମାନଙ୍କର ଜୀବନୀ-ସମ୍ବଳିତ 'ଭକ୍ତମାଳ' ନାମକ ଗ୍ରନ୍ଥ ପ୍ରକାଶ କରିବାଲାଗି ସ୍ୱତଃ ପ୍ରବୃତ୍ତ ହୋଇ ୧୯୫୭ ମସିହା ଫେବୃୟାରି ମାସରେ ପାଞ୍ଚଶତ ଟଙ୍କା ସାହିତ୍ୟ ସମାଜର ତତ୍‌କାଳୀନ ସଭାପତି ୰ ଶଶିଭୂଷଣ ରାୟଙ୍କ ନିକଟକୁ ପଠାଇ-ଥିଲେ । ଏଥିପାଇଁ ୰ ଅଗ୍ରଣୀ ଓ ସାହିତ୍ୟ ସମାଜର ତତ୍‌କାଳୀନ

ପ୍ରଥମ ସଂସ୍କରଣ
ଫେବୃୟାରୀ—୧୯୬୦

ପ୍ରକାଶକ—
ଉତ୍କଳ ସାହିତ୍ୟ ସମାଜ
କଟକ

ମୂଲ୍ୟ—ଟ ୨.୦୦

ମୁଦ୍ରାକର—
ବ୍ରଜମୋହନ ଦାସ
ଜଗର ପ୍ରେସ
ପୀଠାପୁର
କଟକ

# ସୂଚନା

ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଏହି 'ଭକ୍ତମାଳା' ପୁସ୍ତକଟି ବରେଣ୍ୟ ଜନନାୟକ ତଥା ସାହିତ୍ୟିକ ଡକ୍ଟର ହରେକୃଷ୍ଣ ମହତାବଙ୍କର ଆର୍ଥିକ ପୃଷ୍ଠପୋଷକତା ଯୋଗୁହିଁ ଅଧୁନା ପ୍ରକାଶିତ ହେବା ସମ୍ଭବ ହେଲା । ତା'ଛଡ଼ା ଏହି ପୁସ୍ତକ ଲାଗି ଏକ ସ୍ୱତନ୍ତ୍ର ଭୂମିକା ଲେଖି ସେ ମଧ୍ୟ ଅମ୍ଭମାନଙ୍କୁ ଅନୁଗୃହୀତ କରିଅଛନ୍ତି । ଏଣୁ ସାହିତ୍ୟ ସମାଜ ପ୍ରତି ତାହାଙ୍କର ଏହି ସାହାଯ୍ୟ ଓ ସହଯୋଗକୁ ଅମ୍ଭେମାନେ ପରମ କୃତଜ୍ଞତା ଓ ବିନମ୍ରତାର ସହିତ ସ୍ୱୀକାର କରୁଅଛୁ ।

ଡକ୍ଟର ମହତାବ ବମ୍ବେର ଗଭର୍ଣ୍ଣର ଥିବା ସମୟରେ ଓଡ଼ିଶାର ଭକ୍ତମାନଙ୍କର ଜୀବନୀ-ସମ୍ବଳିତ 'ଭକ୍ତମାଳା' ନାମକ ଗ୍ରନ୍ଥ ପ୍ରକାଶ କରିବାଲାଗି ସ୍ୱତଃ ପ୍ରବୃତ୍ତ ହୋଇ ୧୯୫୭ ମସିହା ଫେବୃୟାରି ମାସରେ ପାଞ୍ଚଶତ ଟଙ୍କା ସାହିତ୍ୟ ସମାଜର ତତ୍କାଳୀନ ସଭାପତି ୬ ଚିନ୍ତାମଣି ଆଚାର୍ଯ୍ୟଙ୍କ ନିକଟକୁ ପଠାଇ-ଥିଲେ । ଏଥିପାଇଁ ୬ ଆଚାର୍ଯ୍ୟ ଓ ସାହିତ୍ୟ ସମାଜର ତତ୍କାଳୀନ

ସମ୍ପାଦକ ଶ୍ରୀ ନବକୁମାର ଦାସ ଓ ଶ୍ରୀ ଗୌରୀକୁମାର ବ୍ରହ୍ମା ପ୍ରାରମ୍ଭିକ ପରିକଳ୍ପନା ଓ ଆୟୋଜନ କରିଥିଲେ । ଗତବର୍ଷ ନବ ନିର୍ବାଚିତ କାର୍ଯ୍ୟକାରୀ କମିଟି ପକ୍ଷରୁ ଏହାକୁ କାର୍ଯ୍ୟକାରୀ କରିବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହେଲା । ମାତ୍ର ଏହି ସଙ୍କଳନ ଲାଗି ପ୍ରବନ୍ଧ ସବୁ ଯଥାସମୟରେ ଆମର ହସ୍ତଗତ ହୋଇପାରି ନ ଥିବାରୁ ଉକ୍ତମାଳାର ଏହି ପ୍ରଥମ ଭାଗଟି ପ୍ରକାଶିତ ହେବାରେ ବିଳମ୍ବ ଘଟିଛି । ଯଥାଶୀଘ୍ର ଏହାର ପରବର୍ତ୍ତୀ ଭାଗ ପ୍ରକାଶ କରିବା ଲାଗି ଆମ୍ଭେମାନେ ମନସ୍ଥ କରିଅଛୁଁ ।

ଯେଉଁ ସାହିତ୍ୟିକଗଣ ଏହି ସଙ୍କଳନ ଲାଗି ପ୍ରବନ୍ଧ ପଠାଇ ଅଛନ୍ତି ସେମାନଙ୍କ ନିକଟରେ ଆମ୍ଭେମାନେ କୃତଜ୍ଞ । ରେଭେନ୍‌ସା କଲେଜର ଗବେଷକଛାତ୍ର ଶ୍ରୀ ନିଶାମଣି ମିଶ୍ରଙ୍କ 'ଅତିବଡ଼ ଜଗନ୍ନାଥ ଦାସ' ପ୍ରବନ୍ଧଟି କଟକର କୁଞ୍ଜବିହାରୀ ତ୍ରିପାଠୀଙ୍କ ସୌଜନ୍ୟରୁ ପାଇଅଛୁଁ । ପରିଶେଷରେ ସାହିତ୍ୟ ସମାଜର ଅନ୍ୟତମ ସମ୍ପାଦକ ଶ୍ରୀ ଚିଦାନନ୍ଦ ଦାସ ମଧ୍ୟ ଏଥିପାଇଁ ଅକୁଣ୍ଠିତ ସାହାଯ୍ୟ କରିଅଛନ୍ତି । ଏଣୁ ଏହି ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞତା ନିବେଦନ କରୁଅଛି ।

ଜାନକୀ ବଲ୍ଲଭ ମହାନ୍ତି
ତା ୧୫-୨-୬୦
ସମ୍ପାଦକ, ଉତ୍କଳସାହିତ୍ୟ ସମାଜ
କଟକ

# ଭୂମିକା

ସାମାଜିକ ଜୀବନ ନଦୀର ସ୍ରୋତପରି ଦୀର୍ଘ ପରମ୍ପରା ଉପରେ ପ୍ରତିଷ୍ଠିତ । ଯେ ସମାଜର ପରମ୍ପରା ଯେତେ ଦୀର୍ଘ ସେ ସମାଜ ସେତିକି ମାର୍ଜିତ । ନଦୀ ଯେପରି କେବଳ ଉତ୍ପତ୍ତି ସ୍ଥଳର ଜଳ ନୁହେଁ, ସେ ନିଜର ଯାତ୍ରାପଥରେ ମଧ୍ୟ ବହୁଦିଗରୁ ଜଳ ସଂଗ୍ରହ କରେ । ସାମାଜିକ ଜୀବନ ସେହିପରି କେବଳ ସୁଦୂର ଅତୀତ ଇତିହାସର ପୋଷଣ ଉପରେ ନିର୍ଭର କରେ ନାହିଁ । ସେ ମଧ୍ୟ ଯାତ୍ରାପଥରେ ବହୁ ସାଧୁ, ସନ୍ଥ, ମହାତ୍ମାଙ୍କ ତପସ୍ୟା ଦ୍ୱାରା ସମୃଦ୍ଧ ହୁଏ । ଏହି ସମୃଦ୍ଧିର କେନ୍ଦ୍ର ସହିତ ସମ୍ପର୍କ ରହିଲେ ସମାଜର ଅଗ୍ରଗତି କ୍ଷିପ୍ର ହୁଏ, ନଚେତ୍ ଧାରାହରା ନଦୀପରି ଏହା ଶୁଷ୍କ ବା ମଳିନ ହୋଇଯାଏ । ଓଡ଼ିଆ ସମାଜ ପରମ୍ପରାର ସ୍ମୃତି ବିନା ଇତଃସ୍ତତ ବୋଲି ମୋର ମନେହୁଏ । ତାହାର ଗର୍ବ ଅଛି, ଇତିହାସ ଅଛି, ଅନ୍ତର୍ନିହିତ ଶକ୍ତି ଅଛି । କିନ୍ତୁ କେଉଁଠି ସେ ସବୁ ଅଛି ଓ କେଉଁଠୁ ସେ ଜୀବନ ସଂଗ୍ରହ କରୁଛି ତାହା ନିର୍ଦ୍ଧାରିତ ଭାବରେ ଅନୁଭବ କରିପାରୁ ନ ଥିବାରୁ ନାନା ବିକାର ଇନ୍ଦ୍ରା-ଯୋଗରେ ପ୍ରକାଶ ପାଉଛି । ଅପକର୍ଷଭାବନା, ପରଶ୍ରୀକାତରତା, ଅଧୋମୁଖୀ ଆଚରଣ ଏସବୁ ପରମ୍ପରାର ବିସ୍ମୃତି ଯୋଗୁଁ ଘଟିଥାଏ ।

ଭାରତ ବର୍ତ୍ତମାନ ଜାଗ୍ରତ । ପ୍ରାଚୀନ ପରମ୍ପରାର ଗଭୀର ଗହ୍ୱରରୁ ନୂତନ ଶକ୍ତି ସଞ୍ଚୟ କରି ନୂତନ ଭାରତ ଅତି ଦ୍ରୁତଗତିରେ ଅଗ୍ରସର । ଭାରତର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ମଧ୍ୟ ସେହିପରି ହେବା ଉଚିତ । ଓଡ଼ିଶା ଭାରତର ଏକ ବିଶିଷ୍ଟ ଅଙ୍ଗ ଓ ଓଡ଼ିଶା ଯୋଗେ ଭାରତ ଗର୍ବିତ । ଏଣୁ ଓଡ଼ିଆ ସମାଜର ପୁନର୍ଗଠନ ସର୍ବାଦୌ କର୍ତ୍ତବ୍ୟ । ଏ ପୁନର୍ଗଠନର ଭିତ୍ତି ହେବା ଅତୀତ ପରମ୍ପରା ସହିତ ସଂଯୋଗ ଓ ନୂତନ ପରମ୍ପରା ସୃଷ୍ଟି କରିବା ପାଇଁ ଉତ୍ସାହ । ଜଗନ୍ନାଥ ପରମ୍ପରା ଓଡ଼ିଆଙ୍କୁ ଆଜିଯାଏଁ ରକ୍ଷା କରୁଛି । କିନ୍ତୁ ସେତିକି ଯଥେଷ୍ଟ ନୁହେଁ । ସାଧୁ, ସନ୍ଥଙ୍କ ତପସ୍ୟା ମଧ୍ୟ ଅଲକ୍ଷିତ ଭାବରେ ସମାଜକୁ ଜୀବନ ଦାନ କରି ଆସୁଛି । ତାକୁ ସ୍ପଷ୍ଟ କରି ଜାଣିଲେ ପରମ୍ପରାର ଉଦ୍‌ବୋଧନ ଆହୁରି ତୀବ୍ରତର ହେବ । ଏହି ଉଦ୍ଦେଶ୍ୟରେ ବମ୍ବେର ରାଜ୍ୟପାଳ ଥିବା ସମୟରେ ଉତ୍କଳ ସାହିତ୍ୟ ସମାଜକୁ ସୂଚନା ଓ ସାହାଯ୍ୟ ଦେଇଥିଲି ଓଡ଼ିଶାର ଭକ୍ତମାନଙ୍କର ଜୀବନୀ ପ୍ରକାଶ କରିବାପାଇଁ । ଭକ୍ତର ଜୀବନୀ ସବୁ ଯୁଗରେ ସବୁ ଦେଶରେ ପ୍ରହେଳିକାମୟ । କାରଣ ନାନା କିମ୍ବଦନ୍ତୀ ଭକ୍ତ ଜୀବନକୁ ଆଶ୍ରୟ କରି ଚାଲନ୍ତି । କିନ୍ତୁ ସେହି କିମ୍ବଦନ୍ତୀ ମାଧ୍ୟମରେ ଭକ୍ତ ଜୀବନ ସମାଜକୁ ପୁଷ୍ଟ କରିଥାଏ । 'ଭକ୍ତମାଳା'ର ପ୍ରଥମ ଭାଗ ଏବେ ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ପ୍ରକାଶିତ ହେଲା ଜାଣି ମୁଁ ଅତ୍ୟନ୍ତ ସୁଖୀ । ଏଥିପାଇଁ ଅଧ୍ୟାପକ ଶ୍ରୀ ଜାନକୀ ବଲ୍ଲଭ ମହାନ୍ତି ଓ ବିଚିତ୍ରାନନ୍ଦ କରଙ୍କୁ ମୁଁ ଧନ୍ୟବାଦ ଦେଉଛି ।

ଶ୍ରୀ ହରେକୃଷ୍ଣ ମହତାବ

# ସୂଚୀ





# ସାରଳା ଦାସ

ଶୂଦ୍ରମୁନି ସାରଳା ଦାସ ଓଡ଼ିଆ ସାହିତ୍ୟର ଆଦିକବି, ବ୍ୟାସକବି, ଯୁଗସ୍ରଷ୍ଟା, ପ୍ରଧାନ ପୁରାଣ କବି ଓ ଓଡ଼ିଆ ସାହିତ୍ୟ ଓ ଭାଷାର ଜନ୍ମଦାତା ଭାବରେ କଥିତ । ସୂର୍ଯ୍ୟବଂଶର ଗଜପତି ରାଜା କପିଳେନ୍ଦ୍ର ଦେବଙ୍କର ଗୌରବମୟ ରାଜତ୍ୱରେ (ଖ୍ରୀ: ୧୪୩୫—୧୪୬୭) ତାଙ୍କର ଆବିର୍ଭାବ ଘଟିଥିଲା । ଓଡ଼ିଶାର ରାଜନୀତିକ ବାତାବରଣ ସେତେବେଳେ ଘୋର ତମସାଚ୍ଛନ୍ନ । "ଉତ୍ତରରେ ବଙ୍ଗ ସୁଲତାନ, ଦକ୍ଷିଣ-ପଶ୍ଚିମ ଦିଗରୁ ବାହାମନୀ ସୁଲତାନ ଓ ପୁଣି ଦକ୍ଷିଣରୁ ବିଜୟ ନଗର ସମ୍ରାଟଙ୍କର ଆକ୍ରମଣର ଭୟ ଦେଇ ରହୁଥିଲା । ଓଡ଼ିଶାର ରାଜନୀତିକ ଆକାଶ ସେତେବେଳେ ଗଭୀର ଅଡ଼କୁ ଘନକୃଷ୍ଣ ମେଘ ଖଣ୍ଡରେ ଆବୃତ ହୋଇ ଆସୁଥିଲା । ସେତେବେଳେ ସେ ଏକ ଉଜ୍ଜ୍ୱଳ ନକ୍ଷତ୍ର ରୂପେ ପ୍ରକାଶ ଲାଭ କଲେ"। କପିଳେନ୍ଦ୍ର ଦେବଙ୍କର ଓଡ଼ିଶା ଗଙ୍ଗା-ଗୋଦାବରୀ ଓଡ଼ିଶା ଭାବରେ ପ୍ରଖ୍ୟାତ । "କେବଳ ଖାରବେଳଙ୍କୁ ଛାଡ଼ିଦେଲେ

କୌଣସି ଓଡ଼ିଆ ରାଜା ଏପରି ଏକ ଗୌରବାନ୍ୱିତ ବିଶାଳ ରାଜ୍ୟର ଶାସକ ନଥିଲେ ।” “ନବକୋଟି କର୍ଣ୍ଣାଟ କଳବରଗେଶ୍ୱର” ଗଜପତି ରାଜାମାନଙ୍କର ଜନୈତ ପଦବୀ ତାଙ୍କର ସମୟରୁ ହିଁ ସୃଷ୍ଟିଲାଭ କଲା ।

ଗଙ୍ଗବଂଶ ରାଜତ୍ୱର ଅବସାନ ପରେ ପ୍ରଥମ ଓଡ଼ିଆ ରାଜାଙ୍କର ରାଜତ୍ୱକାଳର ପ୍ରଥମ ଓଡ଼ିଆ ମହାକବିଙ୍କର ଆବିର୍ଭାବ । ଏ ଘଟଣା ପଛରେ ଓଡ଼ିଆ ଜାତୀୟତାର ଏକ ମହାନ ଅଭ୍ୟୁତ୍ଥାନ ରହିଛି । ବିଦେଶୀୟ ଗଙ୍ଗ ରାଜତ୍ୱରେ ଓଡ଼ିଆ ଭାଷା ଓ ସାହିତ୍ୟ ବିକାଶ ଓ ସମୃଦ୍ଧି ଲାଭ କରିବା ଅତି ସାଧାରଣ କଥା । ସୂର୍ଯ୍ୟବଂଶର ଅଭ୍ୟୁଦୟରେ ଯଥାର୍ଥରେ ଓଡ଼ିଆ ଭାଷା ଓ ସାହିତ୍ୟ-ପଦ୍ମ ବିକଶିତ ହୋଇଥିଲା ଓ ତାହା ସେହି ଭକ୍ତପ୍ରବର ଯୋଗଜନ୍ମା ସାରଳା ଦାସଙ୍କର ଲେଖନୀରେ । ଓଡ଼ିଶାର ସାଂସ୍କୃତିକ ଇତିହାସରେ ଏହିପରି ଗୋଟିଏ ଗୋଟିଏ ଶୁଭ ମୁହୂର୍ତ୍ତି ଚିରସ୍ମରଣୀୟ । ସୁଦ୍ରମୁନି ତାଙ୍କର ମହାଭାରତର ଆଦି ପର୍ବରେ କପିଳେନ୍ଦ୍ରଙ୍କର ଗୌରବମୟ ରାଜତ୍ୱକୁ ସ୍ମରଣ କରି ଲେଖିଅଛନ୍ତି ।

“ଅହୋ କଟମ୍ବେଶ୍ୱର ଲିଙ୍ଗ ମହୋଦଧିର ଉତ୍ତର ତଟେ
ନୀଳ ସୁନ୍ଦର ପର୍ବତ ନୀଳ କନ୍ଦର ବଟେ ।୮।
ବିଜୟେ ରାମକୃଷ୍ଣ ସୁଭଦ୍ରା ନାମେ ବ୍ରହ୍ମା
ସ୍ଥାବରଲକ୍ଷ ବିତସ ସହସ୍ରକୁ ବରଦ ରୂପେଣ ମହାତମା ।୯।
କଳିକାଳ ଧ୍ୱଂସନୀ ଭୋଗେଣ କୋଟି ପୂଜା
ପ୍ରଣମ୍ୟିତେ ଖଟ୍ଟଇଂ ଶ୍ରୀ କପିଳେଶ୍ୱର ମହାରାଜା ।” ।୧୦।

(ଆଦିପର୍ବ ମହାଭାରତ)

ଭାରତୀୟ ବିଭିନ୍ନ ପ୍ରାଦେଶିକ ସାହିତ୍ୟରେ ମହାଭାରତ ସଂସ୍କୃତ ମହାଭାରତର ଅନୁବାଦିତ ହୋଇଛି ବା ସଂସ୍କୃତ ମହାଭାରତର ଧାରାରେ ଲିଖିତ ହୋଇଛି । ବଙ୍ଗଳା ଭାଷାରେ କାଶୀରାମ ଦାସଙ୍କର ମହାଭାରତ, ମରହଟ୍ଟୀ ଭାଷାରେ ମଧ୍ୱେଶନ୍ତ ଅଦ୍ଧଙ୍କ ଦ୍ୱାରା ରଚିତ ସର୍ବ ସଂଗ୍ରହ ମହାଭାରତ ଓ ବର୍ଯମୁକ୍ତେଶ୍ୱରକୃତ ମହାଭାରତ, ସିନ୍ଧ ଭାଷାରେ ମେଳାରାମକୃତ ବାଳ ମହାଭାରତ, ଆସାମୀ ଭାଷାରେ ଗୋପୀନାଥ ଦ୍ୱିଜ କୃତ ଆସାମୀ ମହାଭାରତ, ଗୁଜରାଟୀ ଭାଷାରେ ହରଦାସ, ବିଷ୍ଣୁଦାସ ଓ କାଶୀସୁତ ପ୍ରଭୃତି ରଚିତ ମହାଭାରତ ଓ ତାମିଲ ଭାଷାରେ ବିଲ୍ଲିପୁତ୍ତୁରାର କୃତ ମହାଭାରତମ୍, ଉର୍ଦ୍ଦୁ ଭାଷାରେ ଗୋରଖନାଥ ନନ୍ଦକୃତ ମହାଭାରତ ପ୍ରଭୃତି ଗ୍ରନ୍ଥ ସାଧାରଣ ଭାବରେ ସଂସ୍କୃତ ମହାଭାରତର ଧାରାରେ ରଚିତ ହୋଇଛି । କିନ୍ତୁ ଶାକ୍ତକବି ସାରଳା ଦାସଙ୍କର ମହାଭାରତରେ ଯେପରି ଅସାଧାରଣ କବି ପ୍ରତିଭାର ବିକାଶ ଘଟିଛି ସେ ପ୍ରକାର ପ୍ରତିଭାର ସ୍ଫୁରଣ ଅନ୍ୟାନ୍ୟ ମହାଭାରତରେ ନାହିଁ କହିଲେ ଭୁଲ୍ ହେବ ନାହିଁ । ଶୂଦ୍ରମୁନି ତାଙ୍କର ମହାଭାରତ, ଚଣ୍ଡୀପୁରାଣ ଓ ବିଲଙ୍କାରାମାୟଣ ଗ୍ରନ୍ଥର ବିଭିନ୍ନ ସ୍ଥାନରେ ଝଙ୍କଡ଼ ବାସିନୀ ସାରଳା ଦେବୀଙ୍କର ମହିମା ବର୍ଣ୍ଣନା କରିବା ସହିତ ତାଙ୍କ ଅନୁଗ୍ରହରେ ସେ ସବୁ ଗ୍ରନ୍ଥ ଲେଖିବାକୁ ସମର୍ଥ ହେବାର ଲେଖି ଅଛନ୍ତି । ଚଣ୍ଡୀ ପୁରାଣରେ ସେ ଲେଖିଛନ୍ତି ଯେ ସେ ଜନ୍ମରୁ କୃଷିକାରୀ ଓ ହଳରାମ ଶସ୍ତ୍ରଧାରୀ ପୁଣି ସେ ଅପଣ୍ଡିତ କିନ୍ତୁ ସାରଳା ଦେବୀଙ୍କର ଅନୁଗ୍ରହରୁ ଗ୍ରନ୍ଥ ଲେଖିବାକୁ ସମର୍ଥ ହେଲେ । ସେ ଏହିପରି ଭାବରେ ବର୍ଣ୍ଣନା କରିଛନ୍ତି ।

"ଜନ୍ମେଣ ଶୂଦ୍ର ମୁଂ ଅପଣ୍ଡିତ ଗ୍ୟାଂତା
କୁସ୍ଥାନ ବାସି ମୁହିଂ କେସ ମୁଂ କବିତା

ନ ପଢିଲି ସାସ୍ତ୍ର ବନ୍ଧ୍ୟା ହୋଇଲି ଅପାଠେକ
ଅଣ ଅକ୍ଷର ହୋଇଲେ ଅମାର୍ଜିତା ଅବିବେକ
ଅହୋ ଅଦିଣ ମାସ ସୁକ୍ଳ ପକ୍ଷ ଦସମି ଅପରାଜିତେ
ରାଡେଣ ସ୍ତ୍ରୀ ଯେକ ଭେଟିଲ ଅସି ମୋତେ ।
ତୁଳସିମାଳ ଗୋଟିଏ ମୋହର କଣ୍ଠଦେଇ
ଯେ ସାସ୍ତ୍ର କଥା ମୋତେବ ବସିକହି
ସେ ମୋତେ ରଡେଣ ବସି କହଇ ଯାହା
ସମସ୍ତକୁ ସରସନ୍ତେ ମୁଁ ଲେଖନ କରଇ ତାହା ।"

ଚଣ୍ଡୀପୁରାଣ – ପୃ ୨୫୬

କେବଳ ସାରଳା ଦାସ ନୁହନ୍ତି ଅଧିକାଂଶ ପ୍ରଚଳିତ ସମ୍ପ୍ରଦାୟ ପୁରାଣକାର ଓ କବି ଗ୍ରନ୍ଥରେ କୌଣସି ଦେବାଦେବୀଙ୍କର ଅନୁଗ୍ରହରୁ ଗ୍ରନ୍ଥ ଲେଖିବାର କଥା ବହୁ ପ୍ରାଚୀନ ମତ ସମ୍ମତ । ଏହାଛଡ଼ା ଶୂଦ୍ର ମୁନି ସାରଳା ଦାସଙ୍କ ସମ୍ବନ୍ଧରେ କିମ୍ବଦନ୍ତୀ ପ୍ରଚଳିତ ରହିଛି । କଥିତ ଅଛି ଯେ ସିଦ୍ଧେଶ୍ୱର ଦାସ ପରବର୍ତ୍ତୀ ସମୟରେ ସାରଳା ଦାସ ନାମରେ ପରିଚିତ ହେଲେ । ଏକ ସମୟରେ ତାଙ୍କୁ ପାଠ ନପଢ଼ିବା ନିମିତ୍ତ ପିତାଙ୍କଠାରୁ କଠୋର ଭର୍ତ୍ସନା ଶୁଣିବାକୁ ପଡ଼ିଥିଲା । ସିଦ୍ଧେଶ୍ୱର ବହୁ ଦୁଃଖିତ ହୋଇ ବର୍ତ୍ତମାନ ସାରଳା ଦେବୀଙ୍କର ମନ୍ଦିରର ପଶ୍ଚିମ ଦିଗରେ ଅବସ୍ଥିତ ବାଲି ସାରଳାଙ୍କ ନିକଟରେ ଅଧିଆ ପଡ଼ିଲେ । ଦେବୀ ସିଦ୍ଧେଶ୍ୱରଙ୍କର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ବର ଯାଚନ୍ତେ ସିଦ୍ଧେଶ୍ୱର ମହାଭାରତ ଗ୍ରନ୍ଥ ରଚନା କରିବା ପାଇଁ ବର ମାଗିଲେ । ଫଳରେ ଦେବୀଙ୍କର କୃପାଲାଭ କରି ସେ ମହାଭାରତ ପ୍ରଭୃତି ଗ୍ରନ୍ଥ ଲେଖିବାକୁ ସମର୍ଥ ହୋଇଥିଲେ । ଦେବୀ ପ୍ରସନ୍ନ ହେବା ପରେ ସିଦ୍ଧେଶ୍ୱର ଦାସ ସାରଳା ଦାସ ଭାବରେ ପରିଚିତ ହୋଇଥିଲେ ।

ସାରଳା ଦାସଙ୍କର ଭକ୍ତ ଜୀବନ ସମ୍ବନ୍ଧରେ ଆହୁରି ଅନେକ କଥା ଲୋକ ମୁଖରେ ଶୁଣାଯାଏ । ସିଦ୍ଧେଶ୍ୱର ଏକଦା ହଳ କରୁଥିବା ସମୟରେ ଗୋଟିଏ ବୁଢ଼ୀକୁ ଦେଖିଲେ । ବୁଢ଼ୀଟି ତାଙ୍କର ଜମିପାଖରେ ଥିବା ନଈ ପାର କରାଇ ଦେବାକୁ କହିଲେ । ତାହାରେ ଉଭୟ ଯିବାବେଳେ ବୁଢ଼ୀଟି ସିଦ୍ଧେଶ୍ୱରଙ୍କୁ ଗୀତ ପଦେ ଗାଇବାକୁ କହିଲା । ସିଦ୍ଧେଶ୍ୱର ବୁଢ଼ୀର ଏପ୍ରକାର ପ୍ରଶ୍ନରେ କହିଲେ ଯେ ସେ ମୂର୍ଖ କୃଷିକାର । ସେ'ବା କପରି ଗୀତ ବୋଲିବାକୁ ସମର୍ଥ ହେବେ । ବୁଢ଼ୀ କହିଲା ଯେ ତୋର ଅଦ୍ଭୁତ ଜ୍ଞାନ ଉଦୟ ହେବ ଓ ତୁ ଶାରଳା ମହାଭାରତ ଗ୍ରନ୍ଥ ରଚନା କରିବାକୁ ସମର୍ଥ ହୋଇ ପାରିବୁ । ଗଞ୍ଜାମ ଅଞ୍ଚଳରୁ ପ୍ରାପ୍ତ ଏକ ପାଣ୍ଡୁଲିପିରେ ଏହି ପ୍ରକାର ବିଷୟର ବର୍ଣ୍ଣନା ରହିଛି ।

"କୃଷିକାର ବୋଇଲେ ମାଗୋ ମୂର୍ଖ ମୋର ମତି
ନ ଅଛେ ପଦ କେମନ୍ତେ କରିବି ଭଗତି
ଆମ୍ଭ ବୋଲେ ଅଙ୍କୁରେ ହେଉ ତୋହର ଜ୍ଞାନ
ଶ୍ରୀ ମହାଭାରତ ଏବେ କରନ୍ତୁ ଲେଖନ ।"

ବୁଢ଼ୀଙ୍କୁ କାନ୍ଧରେ ବସାଇ ସିଦ୍ଧେଶ୍ୱର ଦାସ ବହୁ କଷ୍ଟରେ ନିକଟସ୍ଥ ଚନ୍ଦ୍ରଭାଗା ନଦୀକୁ ପାରି କରାଇ ଦେବାପରେ ତାଙ୍କୁ ସାରଳା ଦେବୀ ବୋଲି ଜାଣି ପାରିଲେ । ପରେ ସେ ସାରଳାଦେବୀଙ୍କ ନିକଟରେ କେବଳ ଅନୁକରଣ କରି ମହାଭାରତ ପ୍ରଭୃତି ଗ୍ରନ୍ଥ ଲେଖିବାକୁ ସମର୍ଥ ହୋଇଥିଲେ । ମହାଭାରତର ଚଣ୍ଡୀ ପୁରାଣ ଓ ବିଲଙ୍କା ରାମାୟଣର ବିଭିନ୍ନ ସ୍ଥାନରେ କବି ସାରଳା ଦେବୀଙ୍କର ସ୍ତୁତି ବନ୍ଦନା ଓ ତାଙ୍କର ଆଦେଶରେ ମହାଭାରତ ପ୍ରଭୃତି ଗ୍ରନ୍ଥ ରଚନା କରିବା କଥା ବର୍ଣ୍ଣନା କରିଅଛନ୍ତି । ମଧ୍ୟ ପର୍ବରେ ଲେଖିଛନ୍ତି ।

ଶ୍ରୀ ଚଣ୍ଡୀ ସାରଳା ଚରଣେ ଭଜନ
ଦଯ୍ୟାକର ସାହାସେ କହଇ ବଦ୍ଧନସେନୀ
ତାହା ଶୁଣି ମୁହିଂ କରଇଂ ବଖାଣ
ନୋହିଲ କଥାକୁ ରଖା ନାହିଂ ମୋର ମନ ।
ଶ୍ରୀ ଜଗନ୍ନାଥ ଜାଣନ୍ତି ଏଥିର ବିଧାନ
କବି ସାରଳା ଦାସ ଜଗନ୍ନାଥରେ ଶରଣ ।"

[ମହାଭାରତ ମଧ୍ୟପର୍ବ]

ଏ ପ୍ରକାର ବର୍ଣ୍ଣନା କେବଳ ନୁହେଁ, ନିଜର ନମ୍ରତା ଓ ବିନୟ ସବୁଠାରେ କବି ପ୍ରକାଶ କରିଅଛନ୍ତି । ଅଧିକାଂଶ ସ୍ଥାନରେ ସେ ନିଜକୁ ମୂର୍ଖ, ଅପଣ୍ଡିତ, କୃଷିକାର୍ଯ୍ୟ, ହଳଧର ଶସ୍ତ୍ରଧାରୀ ପ୍ରଭୃତି ବିଭିନ୍ନ ନମ୍ରତା ସୂଚକ ପଦରେ ରଚନାବଳୀ ପରିପୂର୍ଣ୍ଣ ହୋଇ ଉଠିଛି । ସେହିପରି ମଧ୍ୟପର୍ବ ମହାଭାରତରେ ସେ ଲେଖିଛନ୍ତି

"ତୋହର ଚରଣକୁ ଆଶ୍ରେ କଲି ମୁହିଂ
ଭାରତ କରିବାକୁ ମନରେ ବିସ୍ତରଇଂ
ମୂର୍ଖ ଅପଣ୍ଡିତ ମୁଂ ନଜାଣଇଂ କିଛି
ତୋହର ଚରଣକୁ ଆଶ୍ରେ କରିଅଛି
ମୋହର ଜନ୍ମେତ ବିଦ୍ୟା ପଢ଼ି ନାହିଂ
ସୁଜନ ଜନଙ୍କର ସଙ୍ଗତେ ନଥାଇଂ
ପଣ୍ଡିତ ଜନଙ୍କର ନବସିଲି ସଙ୍ଗେ
ପଶା ଯୁତ ସକଟ ମୁଂ ବୁଲିଲି ନାନା ରଙ୍ଗେ ।"

ପଶାଯୁତ ଖେଳ ଓ ଜୁଆଶାର ବିଭିନ୍ନ ସ୍ଥାନ ଶଗଡ଼ରେ ବୁଲିବା କଥା ଓ ପଣ୍ଡିତ ମାନଙ୍କ ସାଙ୍ଗରେ ନ ମିଶିବା କଥା ସତ୍ୟ ହୋଇ ପାରେ । ମହାପୁରୁଷ ମାନଙ୍କର ଜୀବନରେ ଅଦ୍ଭୁତପୂର୍ବ ପରିବର୍ତ୍ତନ

ଅସିଥାଏ । ବାଲ୍ମୀକି, ବିଲ୍ୱମଙ୍ଗଳ, ଜଗାଇ ମାଧାଇ ପ୍ରଭୃତି ବହୁ ଭକ୍ତଙ୍କର ଜୀବନ ବହୁ ଅଧଃପତନ ସ୍ତରରୁ ଦେବତାର ସ୍ୱର୍ଗୀୟ ସୋପାନକୁ ଉନ୍ନୀତ ହୋଇଛନ୍ତି । ଏ ଯୁଗରେ ଶ୍ରୀ ରାମକୃଷ୍ଣ ପରମହଂସ ବିଶେଷ କିଛି ପାଠ ନ ପଢ଼ି ଯେଉଁ ଦାର୍ଶନିକ ତଥ୍ୟର ଅଲୋଚନା କରି ଅଛନ୍ତି ତାହାକୁ ପାଠକଲେ ଯେକୌଣସି ପାଠକର ହୃଦୟ ବିସ୍ମୟରେ ଅଭିଭୂତ ହୋଇଥାଏ । ସାରଳାଦାସ ସେହିପରି ପାଠ ନପଢ଼ି ଯଥାର୍ଥ ପ୍ରାକୃତ ଓଡ଼ିଆ ଭାଷାରେ ବିରାଟ ଗ୍ରନ୍ଥସମୂହ ଲେଖିବା କିଛି ଅସମ୍ଭବ ନୁହେଁ । ଲୋକମୁଖରୁ ପାରାୟଣ ହେଉଥିବା ମହାଭାରତ, ଚଣ୍ଡୀ ପୁରାଣ ଓ ଅନ୍ୟାନ୍ୟ ପୁରାଣର ବହୁ ଆଖ୍ୟାନ ଶୁଣି ତହିଁରେ ନିଜର କଳ୍ପନା ମିଶାଇ ଏକ ନୂତନ ମହାଭାରତ ଓ ଅନ୍ୟାନ୍ୟ ପୁରାଣ ସୃଷ୍ଟି କରିବା ଫଳରେ ତାଙ୍କର ପାଣ୍ଡିତ୍ୟ ନୁହେଁ ଅଦ୍ଭୁତ ଯୌଗିଶକ୍ତିର ପ୍ରକାଶ ପାଇଛି । ଏ ପ୍ରକାର ଯୌଗିଶକ୍ତିର ଅଧିକାରୀ ହେବାକଥା ସେ ସର୍ବତ୍ର ସ୍ୱୀକାର କରି ଅଛନ୍ତି ।

କବି କଳ୍ପନା ବଳରେ ନିଜର ପୂର୍ବଜନ୍ମ କଥା ମଧ୍ୟ ଜଣାଇ ଅଛନ୍ତି । ଏହାର ବର୍ଣ୍ଣନା ମଧ୍ୟପର୍ବ ମହାଭାରତରେ ଲିପିବଦ୍ଧ ହୋଇଛି । ପ୍ରଥମେ ସେ କୈଳାସ ମନ୍ଦିରରେ ଶିବଙ୍କର ଦ୍ୱାରପାଳ ଭାବରେ ଥିଲେ ଓ ଗିରିଜାଙ୍କର ଶାପରେ ସେ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରିଥିଲେ । ଏହାଛଡ଼ା ସ୍ୱର୍ଗାରୋହଣ ପର୍ବରେ ସେ ଲେଖିଛନ୍ତି ଯେ ସେ ପ୍ରଥମ ଜନ୍ମରେ କାଳିଦାସ, ଦ୍ୱିତୀୟ ଜନ୍ମରେ ମହାକାଳଧ୍ୱଂସ, ତୃତୀୟ ଜନ୍ମରେ ସାରଳା ଦାସ କବି ଏବଂ ତତ୍ପରେ ତାଙ୍କର ମର୍ତ୍ତ୍ୟରେ ଆନ୍ୟ ଏକ ଜନ୍ମ ପରେ ସେ ପୁନର୍ବାର ଶିବଙ୍କର ଦ୍ୱାରପାଳ ଭାବରେ କୈଳାସ ପର୍ବତକୁ ଫେରିଯିବେ । ମଧ୍ୟ ପର୍ବରେ ମଧ୍ୟ ସେ ଲେଖିଅଛନ୍ତି—

କପିଳାସ ମନ୍ଦରେ ଦେବ ମୁଂ ଶିବଦ୍ୱାରପାଳ
ଗିରିଜାସାପେୟ ମୁଂ ଜନ୍ମିଲି ମହୀତଳ

ଇତ୍ୟାଦି

ଓ ପରେ ପରେ ତାଙ୍କର ଜନ୍ମ ସ୍ଥାନର ନିର୍ଦ୍ଦେଶ ଦେଇ ଅଛନ୍ତି—

ଯମ୍ବୁଦ୍ୱିପ ଭ୍ରଅଖଣ୍ଡ ଓଡ଼୍ରରାଷ୍ଟ୍ର ନଗରେ
ଚିତ୍ରୋତ୍ପଳା ନଦୀ ଇଶାନ୍ୟ ଭାଗ କୁଳେ
ଯଂଖେର ପୁର ବୋଲି ଯେ ଗ୍ରାମର ନାମ
କନକାବତୀ ପାଟଣା ଯାହା ସର୍ଜିଥିଲେ ପର୍ଶୁରାମ
ତହୁଂର ମଧ୍ୟରେ ଶାରେଳା ବୋଲି ଗ୍ରାମ
ବିଜେ ମାହେଶ୍ୱରୀ ସାରେଳା ଚଣ୍ଡୀନାମ

ପୁଣି ବର୍ଣ୍ଣନା କରିଛନ୍ତି ସେହି ସିଂହବାହିନୀ ସାରଳାଦେବୀ କୃପାଜଳ ନନ୍ଦନୀ, ସତ୍ୟଯୁଗରେ ତାଙ୍କର ନାମ ନର୍ମଦା ସରସ୍ୱତୀ । ସାରଳା ଦେବୀଙ୍କୁ ଯମଦଗ୍ନି ସୁତ ପର୍ଶୁରାମ ତାହାଙ୍କ ପ୍ରଥମେ ପୂଜା କରୁଥିଲେ । ଏହି ବିଷୟ ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ରଥ ମହାଶୟ ତାଙ୍କର "ଶାରଳା ଚରିତ" ପୁସ୍ତକରେ ଲୋକମୁଖରୁ ଶୁଣି ବିସ୍ତୃତ ଭାବରେ ବର୍ଣ୍ଣନା କରି ଅଛନ୍ତି । "ଏ ସମ୍ବନ୍ଧରେ ବହୁକାଳ ପୂର୍ବରୁ ଏହିପରି କିମ୍ବଦନ୍ତୀ ଅଛି ଯେ ଧନୁର୍ଧର ପରଶୁରାମ ତୀର୍ଥାଟନ କାଳରେ ନାନା ତୀର୍ଥ ପର୍ଯ୍ୟଟନ କରି ଉତ୍କଳ ଅନ୍ତର୍ଗତ ଏହି ଚନ୍ଦ୍ରଭାଗା କୂଳରେ ଉପସ୍ଥିତ ହେଲେ । ନଦୀରେ ସ୍ନାନ କରିବାକୁ ଗଲାବେଳେ ସ୍କନ୍ଧର ଭୂଷଣ ମହାଶରାସନର କୌଣସି ଅଧାର ନପାଇ ନଦୀ ତୀରରେ ତାହାକୁ ଲମ୍ବ ଭାବରେ ପୋତି ବସିଲେ; ମାତ୍ର ଯେଉଁଠାରେ ରଖିବାକୁ ଗଲେ ସେଠାରେ ଧନୁଟି ସମ୍ପୂର୍ଣ୍ଣ ଗଳିଗଲା । ବୀରବର ଧନୁ ରକ୍ଷା ଲାଗି ଇତସ୍ତତଃ କରୁ କରୁ ଗୋଟିଏ ସ୍ଥାନରେ

କସ୍ତୁରୀ ପଶିଯାଇ ଧନୁଟି ନିମ୍ନ ଭାଗରେ ରହିଗଲା । ତହୁଁ ସେ ସ୍ଥାନଙ୍କର କୌତୁହଳ ବଶତଃ ଉକ୍ତ ସ୍ଥାନ ଖୋଳି ଦେଖିଲେ ଧନୁ ତଳେ ଖଣ୍ଡିଏ କୃଷ୍ଣଶିଳା ରହିଅଛି । ସେହି ମନୋହର ଶିଳା ଖଣ୍ଡିକ ପାଇ ବୀର ପରଶୁରାମ ସେଥିରେ ଧନୁ ଅଗ୍ରରେ ଗୋଟିଏ ଚଣ୍ଡୀ ମୂର୍ତ୍ତି ଖୋଦିତ କଲେ । ପରଶୁରାମ ବିଭିନ୍ନ ସ୍ଥାନରେ ଚଣ୍ଡୀ ମୂର୍ତ୍ତିର ପ୍ରତିଷ୍ଠା କରି ପୂଜାବିଧି ଆରମ୍ଭ କଲେ । ପରଶୁରାମ ବିଭିନ୍ନ ସ୍ଥାନରେ ଚଣ୍ଡୀପୂଜା କରି ଥିବାର ଶାରଳା ମହାଭାରତରେ ବର୍ଣ୍ଣିତ ଅଛି ।” (ଶାରଳା ଚରିତ ପୃ, ୫୧—୫୨)

କବି ତାଙ୍କର ରଚନାରେ ବିଭିନ୍ନ ଦେବାଦେବୀଙ୍କୁ ସ୍ତୁତି ଓ ବନ୍ଦନା କରିଥିଲେ ମଧ୍ୟ ସେ ଯେ ମୁଖ୍ୟତଃ ଶାକ୍ତ ଧର୍ମାବଲମ୍ବୀ ଥିଲେ କହିବା ବାହୁଲ୍ୟ ହେବ । ଶକ୍ତି ପୂଜାର ଧାରା ଓଡ଼ିଶାରେ ବହୁ ପ୍ରାଚୀନ । ତେବେ ପ୍ରଧାନ ଭାବରେ ତାନ୍ତ୍ରିକ ବୌଦ୍ଧଧର୍ମ ସହିତ ଶାକ୍ତ ଧର୍ମର ପ୍ରବଳ ପ୍ରଚାର ଓ ପ୍ରସାର ଖ୍ରୀ: ୭ମ ଓ ଖ୍ରୀ: ୮ମ ଶତାବ୍ଦୀଠାରୁ ଓଡିଶାରେ ଘଟିଥିଲା । ଚଣ୍ଡୀପୁରାଣ ଗ୍ରନ୍ଥ ତଥା ତାଙ୍କର ଅନ୍ୟାନ୍ୟ ଗ୍ରନ୍ଥରେ ସେ ଶାକ୍ତ ଧର୍ମର ବିଭିନ୍ନ ସ୍ୱରୂପ ଉଲ୍ଲେଖ କରି ଅଛନ୍ତି । ବିଭିନ୍ନ ଯୋଗିନୀ, ମାତୃକା ଓ ଓଡ଼ିଶାର ପ୍ରଧାନ ପ୍ରଧାନ ଶାକ୍ତ ପୀଠର ମହତ୍ତ୍ୱ ପ୍ରତିପାଦନ କରିଅଛନ୍ତି । ସେହିପରି ଓଡ଼ିଶାର ବିଭିନ୍ନ ଦେବୀ-ପୀଠରେ ପଶୁବଳି ତଥା ନରବଳି ପ୍ରଦତ୍ତ ହେଉଥିବାର ବିଷୟ ମହାଭାରତରେ ମଧ୍ୟ ସୂଚିତ ହୋଇଛି । ଚଣ୍ଡୀ ପୁରାଣରେ ଶାକ୍ତ ଧର୍ମର ଭୟଙ୍କର ସ୍ୱରୂପ ଅସୁରବଳି ଓ ଦେବୀ ମାନଙ୍କର ଯୁଦ୍ଧର ବର୍ଣ୍ଣନାରେ ଦିଆ ହୋଇଛି—

“ଦାନ୍ତେଣ ବିଦାରିଣ ଖାଉନ୍ତି ଖାହାର ଭୁକୁ
ଖଟେଣ୍ଡେଣ କାଟମୋଡ଼ି ଖଣ୍ଡେ ଦିଅନ୍ତି ଅଟେକକୁ

ରକତ ମାଂସ ଖାଇଣ ସେ ନ ପକାନ୍ତି ହାଡ଼
ପୃଥିବୀ କମ୍ପଇ ଯେ ବାଜଇ ରଙ୍ଗମଡ଼
ମୁଣ୍ଡ ବସ୍ତ୍ରାବଣ ଦଅନ୍ତି ଘୋର ରଡ଼
ହିଅ ବଦାରନ୍ତି ବୁକୁ ଅନ୍ତ କାଢ଼ି
ଅଞ୍ଜୋଳା କରଣ ସେ ଧରନ୍ତି ରୁଧିର
ଏକ ନିବର୍ତ୍ତନ୍ତି ନେଇ ଅରେକ ଉପର ।" ଚଣ୍ଡୀପୁରାଣ

"କଳ କଳା ଶବଦ ଯେ ମଦରା ରସ ଭୋଳା" "ନରବଳି ଭୋଜନ ମୋତେ ଦେଲକ ବଧାତା" 'ମଣୋହି ପୋଡ଼ା ବଳରେ କରବ ଅଙ୍ଗ ତୋତ (ମଧ୍ୟପର୍ବ) ପ୍ରଭୃତ ପଦରେ ଶାକ୍ତ ଧର୍ମର ଯଥାର୍ଥ ସ୍ୱରୂପ ପ୍ରକାଶ ପାଇଛି । ଅାଦ ପର୍ବରେ "ନିରଞ୍ଜନ' ବା ଶୂନ୍ୟରୁ ଶକ୍ତି ଯାନର ଉତ୍ପତ୍ତି କଥା ମଧ୍ୟ ବର୍ଣ୍ଣନା କରି ଅଛନ୍ତି । ତାନ୍ତ୍ରିକ ବୌଦ୍ଧ ଧର୍ମର ଶୂନ୍ୟବାଦ ଓ ତାହା ସହିତ ଶକ୍ତିଯାନ ବା ଶାକ୍ତଧର୍ମର ସମ୍ବନ୍ଧ ଘନିଷ୍ଠ କହିବା ବାହୁଲ୍ୟ ହେବ । ଓଡ଼ିଶାର କେବଳ ବଭିନ୍ନ ଦେବାଦେବୀ ନୁହନ୍ତି ଓଡ଼ିଶା ବାହାରେ ଆସାମର କାମାକ୍ଷୀ ଦେବୀଙ୍କର ବହୁଳ ବର୍ଣ୍ଣନା ସାରଳା ମହାଭାରତରେ ରହିଛି । ସଭାପର୍ବରେ—

"ରୁଧିର ବଲେପନୀ ଗୋ ପୋଡ଼ା ମାଂସେ ଭୋଗି
ଶ୍ରୋଣେହା ପିସାଚ ପ୍ରେତଭୂତ ତୁଲେ ଭକ୍ଷୀ
ସ୍ୱରପ ସିଦ୍ଧାଙ୍ଗୀ ଗୋ କାମାକ୍ଷୀ' ସିଦ୍ଧ ଭାଗୀ
ସିଦ୍ଧମୁନୀ ବେଦ ସାଧଙ୍ଗୀ ଗୋ ଶବର ମାତାଙ୍ଗୀ
ଇତଶ୍ରୀ ମହାଭାରଥେ କାଳୀକା ପୁରାଣୋକ୍ତେ
ମୃଦଙ୍ଗ ଯେହ୍ନା ବଖାଇଲ ସଚରାର 'ଜନହିତେ"

ମହାଭାରତର ୫.୦ ସହିତ କବ ବଭିନ୍ନ ପୁରାଣ ଅଭ୍ୟାସ କରିଥିବା କଥା ଲେଖିଅଛନ୍ତି । ଶିବପୁରାଣ, ମାର୍କଣ୍ଡ ପୁରାଣ, ନାରଦ

ପୁରାଣ, ବସ୍ତୁ ପୁରାଣ ଓ କାଳିକା ପୁରାଣ ପ୍ରଭୃତି ପ୍ରଧାନ । ଏହାଛଡ଼ା ତାନ୍ତ୍ରିକଙ୍କର ଶାକ୍ତଧର୍ମ ଦର୍ଶନ ବ୍ୟତୀତ ଜ୍ୟୋତିଷ ଗ୍ରନ୍ଥ ଓ ତତ୍କାଳୀନ ଓଡ଼ିଶାରେ ପ୍ରଚଳିତ ବିଭିନ୍ନ ତନ୍ତ୍ରମନ୍ତ୍ର ଓ ଯୋଗ ପ୍ରକ୍ରିୟା ପ୍ରଭୃତିରେ ପାରଦର୍ଶିତା ଥିଲା । ତତ୍କାଳୀନ ଓଡ଼ିଶାରେ ସମରସଜ୍ଜା ଓ ମଲ୍ଲଯୁଦ୍ଧ ସମ୍ବନ୍ଧୀୟ ବହୁଶାସ୍ତ୍ର ପ୍ରଚଳିତ ଥିଲା, ତହିଁରେ ଭକ୍ତ କବିଙ୍କର ବିଶେଷ ପ୍ରବେଶ ଥିବାର କଥା ତାଙ୍କ କୃତିର ବିଭିନ୍ନ ସ୍ଥଳରୁ ଜଣାପଡ଼ିଥାଏ ।

ବହୁ କାଳରୁ ଶ୍ରୀକ୍ଷେତ୍ରର ଜଗନ୍ନାଥ, ଶିବ ଓ ବିମଳା ଶକ୍ତି ଭାବରେ ପୂଜିତ। ଏହି ପ୍ରକାର ଶିବଶକ୍ତିଙ୍କର ଜଗନ୍ନାଥ ଓ ବିମଳାଙ୍କ ସହିତ ସମ୍ବନ୍ଧ ତନ୍ତ୍ରଯୁଗରୁ ପ୍ରଚଳିତ । ସେଥିପାଇଁ କଥିତ ଅଛି । "ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ" ଶାକ୍ତଧର୍ମ ଓଡ଼ିଶାରେ ଯେତେବେଳେ ଚରମ ଲୋକପ୍ରିୟତା ଲାଭକରିଥିଲା ସେତେବେଳେ ଜଗନ୍ନାଥ ମଧ୍ୟ ଶିବ ରୂପରେ ଓ ବିମଳା ଶକ୍ତି ରୂପରେ ରୂପାନ୍ତରିତ ହୋଇଥିଲେ । ଭକ୍ତକବି ଶାରଳାଦାସ ତତ୍କାଳୀନ ପ୍ରଧାନ ଦେବ ଦେବୀଙ୍କର ସ୍ତୁତିକରିବା ସହିତ ବିମଳା, ମଙ୍ଗଳା, ଚର୍ଚ୍ଚିକା, ଭଗବତୀ ଓ ସର୍ବୋପରି ସାରଳା ଚଣ୍ଡୀଙ୍କର ବହୁ ସ୍ତୁତି କରିଅଛନ୍ତି ।

କଥିତ ଅଛି ଯେ ସାରଳାଦାସ ତାଙ୍କ ମହାଭାରତ ଗ୍ରନ୍ଥ ମୁନିଗୋସାଇଁ ମଠ ନିକଟସ୍ଥ ବଟତଳେ ବସି ରଚନା କରିଥିଲେ । ଉକ୍ତ ବଟବୃକ୍ଷ ଆଜି ପର୍ଯ୍ୟନ୍ତ ମଧ୍ୟ ଉକ୍ତ ସ୍ଥାନରେ ଅଦ୍ୟାପି ପ୍ରାଚୀନ ଭକ୍ତ କବିଙ୍କର ଅସୀମ ସାଧନାର ସ୍ମୃତି ଜାଗରଣ କରୁଛି । ସାରଳା ଦେବୀଙ୍କୁ ଆରାଧନା କରିବାରେ ମହାଭାରତ ଲେଖିବାପାଇଁ କବି ସ୍ୱପ୍ନାଦିଷ୍ଟ ହୋଇଥିଲେ ଓ କିମ୍ବଦନ୍ତୀ ଅଛି ଯେ ଦେବୀ ତାଙ୍କୁ ସ୍ୱପ୍ନରେ କହିଥିଲେ "ତୁ ବାଟରେ ଚାଲିବେଳେ ଯେଉଁ ଲେଖନ

ପାଇବ୍ରୁ ତାହାଁରେ ବିରାଟ ମହାଭାରତ ଗ୍ରନ୍ଥ ରଚନା କରିବାକୁ ସମର୍ଥ ହେବୁ । ସେହି ଲେଖଣୀରେ କଳ୍ପବୃକ୍ଷ ମୂଳରେ ତୁ ମହାଭାରତ ଗ୍ରନ୍ଥ ରଚନା କରି ପାରିବୁ । ଦେବୀଙ୍କ ଆଦେଶରେ ସାରଳା ତାହାହିଁ କରିଥିଲେ ।

କବି ଯେ ସେ ସମୟରେ ଓଡ଼ିଶାର ଜଣେ ବିଶିଷ୍ଟ ଧର୍ମାତ୍ମା ଥିଲେ, ଏହାକହିବା ବାହୁଲ୍ୟ ହେବ । ତାଙ୍କ ଗ୍ରନ୍ଥସମୂହ ପାଠରୁ ଜଣାପଡ଼େ ଯେପରି ସାରଳାଦେବୀ ତାଙ୍କର ପ୍ରାଣ—ଅଧିକାଂଶ ଅଧ୍ୟାୟର ଆରମ୍ଭ, ମଧ୍ୟ ଓ ଶେଷରେ ଦେବୀଙ୍କର ସ୍ତୁତି କରିବାକୁ ଭୁଲି ନାହାନ୍ତି—ସେ ନିଜକୁ ବିଭିନ୍ନ ସ୍ଥାନରେ ସାରଳା ଦେବୀର ପୁତ୍ର ବୋଲି କହି ଅଛନ୍ତି ।

ଜଣେ କୃଷିଜୀବୀ ଦେବୀ ଅନୁଗ୍ରହ ବଳରେ ଯେ ବ୍ୟାସକବି ହୋଇ ପାରିଲେ ତାହାହିଁ ଆଶ୍ଚର୍ଯ୍ୟ ଲାଗେ । କବି ନିଜକୁ ବହୁ ସ୍ଥାନରେ ମୂର୍ଖ ଅପଣ୍ଡିତ କହିଲେ ମଧ୍ୟ ସେ ଯେ ମୂର୍ଖଥିଲେ ତାହାନୁହେଁ ବରଂ ତାହା ତାଙ୍କର ନମ୍ରତା । ସେ ବିଭିନ୍ନ ସ୍ଥାନରେ ମାନବ ସମାଜପ୍ରତି ବହୁ ନୀତି ଓ ଉପଦେଶ ଦେଇ ଅଛନ୍ତି । ମହାଭାରତର ସଭା ପର୍ବରେ ସେ ଗୋଟିଏ ସ୍ଥାନରେ ଲେଖି ଅଛନ୍ତି ।

"ଧର୍ମରେ ଥିଲେ ବାବୁରେ ସବୁଦିନେ ଥାଇ
ଅଧର୍ମ କଥାସେ କାଳେ ନରହଇ"

ମହାକବି ଶୁଦ୍ର ମୁନି ଭାବରେ ମଧ୍ୟ ସେତେବେଳେ ଅଖ୍ୟାତ ହୋଇଥିଲେ । କିମ୍ବଦନ୍ତୀ ରହିଛି ଯେ ଭକ୍ତ କବିଙ୍କର ପ୍ରତିଭା ତତ୍‌କାଳୀନ ଓଡ଼ିଶାର ଗଜପତି ରାଜା ଚଟିକେନ୍ଦ୍ର ଜାଣିବାକୁ ପାଇଥିଲେ ଓ କବିଙ୍କୁ ମୁକ୍ତି ମଣ୍ଡପରେ ଯଥାବିଧି ସମ୍ମାନ ପ୍ରଦର୍ଶନ କରି ତାଙ୍କୁ ଅନେକ ଭୂମିଏ ପ୍ରଗଣା ପୁରସ୍କାର ସ୍ୱରୂପ ପ୍ରଦାନ

କରିଥିଲେ । ଭକ୍ତ କବିଙ୍କ ପ୍ରତି ଏ ସମ୍ମାନ ଯଥାର୍ଥ ହେଉ ବା ନ ହେଉ ସେ ଓଡ଼ିଆ ଭାଷା ଓ ସାହିତ୍ୟ ରାଜ୍ୟର ସେଇଁ ଅଖଣ୍ଡ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ଚିରସ୍ମରଣୀୟ ହୋଇ ରହିଅଛନ୍ତି କହିବା ବାହୁଲ୍ୟ ହେବ । ତାଳପତ୍ର ଲେଖାରେ ସେଇଁ ବିରାଟ ମହାଭାରତ, ଚଣ୍ଡୀ ପୁରାଣ ଓ ବିଲଙ୍କା ରାମାୟଣର ପିରାମିଡ଼ ଓଡ଼ିଆ ସାହିତ୍ୟରେ ରଖିଦେଇ ଗଲେ ସେଥିପାଇଁ ଏ ଜାତି ଯାବତ ସମୟ ପର୍ଯ୍ୟନ୍ତ ତାଙ୍କର ମହିମା କୀର୍ତ୍ତନ କରୁଥିବ ।

ଭକ୍ତ କବିଙ୍କର ତିରୋଧାନ ଆଜକୁ ଛଅଶହ ବର୍ଷରୁ ଅଧିକ ହୋଇଯିବ—ତଥାପି ମୁଣ୍ଡଗୋସାଇଁ ମଠ, ପ୍ରାଚୀନ ବଟବୃକ୍ଷ ଚନ୍ଦ୍ରଭାଗା ବା ବୁଢ଼ୀ ନଈ, ସାରୋଳ ଗ୍ରାମ, କନକାବତୀ ପାଟଣା ବା ଅଧୁନିକ କନକ ପୁର ସର୍ବୋପରି ଝଙ୍କଡ଼ ସାରଳା ମନ୍ଦିର ଓ ନବନିର୍ମିତ ସାରଳାଙ୍କର ସ୍ମୃତିସ୍ତମ୍ଭ ପ୍ରଭୃତି ଅଜି ସୁଦ୍ଧା ଭକ୍ତ କବିଙ୍କର ସ୍ମୃତି ଗାଥା ଉନ୍ମୋଚନ କରୁଥାଏ ।



# ଅତିବଡ଼ ଜଗନ୍ନାଥ ଦାସ

## ୧ । ଜୀବନୀ:—

ଉତ୍କଳ ଇତିହାସରେ ରାଜା ପ୍ରତାପରୁଦ୍ରଦେବଙ୍କ ରାଜତ୍ୱ ଧର୍ମ ଓ ସାହିତ୍ୟ ଜଗତ୍ ଦିଗରୁ ବିଶେଷ ଖ୍ୟାତି ଲାଭ କରିଥିଲା । ଏହାଙ୍କ ରାଜତ୍ୱ ସମୟରେ ପଞ୍ଚସଖାଙ୍କର ଅବିର୍ଭାବ, ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ପ୍ରଭୃତି ଗୁରୁତ୍ୱପୂର୍ଣ୍ଣ ଘଟଣାମାନ ଘଟିଯାଇଥିଲା । ପଞ୍ଚସଖାଙ୍କ ମଧ୍ୟରୁ ଭାଗବତକାର ଜଗନ୍ନାଥ ଦାସ ଅନ୍ୟତମ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ମତରେ—"ଓଡ଼ିଆ ଜାତି ପକ୍ଷେ ଜଗନ୍ନାଥ ଦାସ ଜଣେ ମହାପୁରୁଷ, ଜାତିର ଜଣେ ନିର୍ମାତା" (୧) । ଏହି ମହାମନୁଷ ପୁରୀ ଜିଲ୍ଲାର କପିଳେଶ୍ୱରପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଭଗବାନ ଦାଶ ଓ ମାତା ପଦ୍ମାବତୀ । ଭଗବାନ ଦାଶ ତତ୍କାଳୀନ ରାଜା

---

(୧) 'ଓଡ଼ିଆ ସାହିତ୍ୟର ପରିଚୟ' ୧ମ ଖଣ୍ଡ ୬୩୭ ପୃଷ୍ଠା

ପୁରୁଷୋତ୍ତମଦେବଙ୍କ ଠାରୁ ପୁରାଣପଣ୍ଡା ଉପାଧି ପ୍ରାପ୍ତ ହୋଇଥିଲେ ଓ ସଂସ୍କୃତ ପୁରାଣକୁ ଓଡ଼ିଆରେ ବୁଝାଇବା ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଜଗନ୍ନାଥ ଦାସଙ୍କର ଜନ୍ମ ସମୟ ବିଷୟରେ ଅନେକ ମତଦ୍ୱୈଧ ଦେଖାଯାଏ । କୌଣସି କୌଣସି ଗ୍ରନ୍ଥରେ ସେ ୧୪୮୭ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବାର ଉଲ୍ଲେଖ ଅଛି । (୧) କିନ୍ତୁ ଅଧିକାଂଶ ପଣ୍ଡିତଙ୍କ ମତରେ ସେ ୧୪୧୨ ଶକାବ୍ଦ (ଖ୍ରୀ: ୧୪୯୦) ଭାଦ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ଅନୁରାଧା ନକ୍ଷତ୍ର ବୁଧବାର ଦିନ ମଧ୍ୟାହ୍ନ ସମୟରେ ଜନ୍ମଗ୍ରହଣ କରିଥିଲେ । (୨) ସେଦିନ ଥିଲା ଶ୍ରୀରାଧାଜନ୍ମାଷ୍ଟମୀ । କପିଳେଶ୍ୱରପୁର ଗ୍ରାମର ବ୍ରାହ୍ମଣମାନଙ୍କ ଘରେ ଘରେ ଶ୍ରୀରାଧାଙ୍କ ଜନ୍ମୋତ୍ସବ ବିଧାନ ଲାଗିଥିଲା । ସେଥିପାଇଁ କେହି କେହି ଜଗନ୍ନାଥଙ୍କୁ ରାଧାଦେବୀଙ୍କର ଅଂଶାବତାର ବୋଲି ବିଶ୍ୱାସ କରନ୍ତି । (୩) ଜନ୍ମିତ ଶିଶୁଟିର ମହାପୁରୁଷ ଲକ୍ଷଣ ଓ ଶୁଦ୍ଧସ୍ୱର୍ଣ୍ଣକାନ୍ତି ସମବେତ ଦର୍ଶକଙ୍କୁ ମୁଗ୍ଧ କରିଥିଲା । ଶ୍ରୀ ଜଗନ୍ନାଥଦେବଙ୍କର ଅନୁଗ୍ରହରୁ ସନ୍ତାନ ଲାଭ କରିଥିବାରୁ ଭକ୍ତିର ନିଦର୍ଶନ ସ୍ୱରୂପ ଭଗବାନ ଦାସ ପୁତ୍ରର ନାମ ଜଗନ୍ନାଥ ରଖିଲେ । ଚତୁର୍ଥବର୍ଷ ବୟସରେ ତାଙ୍କର ବ୍ରାହ୍ମଣୋଚିତ ଚୂଡ଼ାକର୍ମ ଓ କର୍ଣ୍ଣବେଧ କାର୍ଯ୍ୟ ସମାପ୍ତ ହେଲା । କଥିତ ଅଛି ସେ

---

(୧) 'ଉଦୟ କାହାଣୀ'—ଅଚ୍ୟୁତାନନ୍ଦ ଦାସ ।

(୨) 'ଅତିବଡ଼ ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀ' ପଣ୍ଡିତ ଗୋଦାବରୀଶ ମିଶ୍ର —୩ ପୃଷ୍ଠା ।

(୩) "ଏକତ୍ୱ ଭାବେ ଯେଣୁ ଦୁଇ ରାଧା ହସିଲେ କୃଷ୍ଣେ ଚୁହିଁ ।
ସେ ହାସ୍ୟ ଜନ୍ମିଲେ ଭୂତଳେ ଯେ ଅତି ବଡ଼ ଜଗନ୍ନାଥ ।
(ଜଗନ୍ନାଥ ଚରିତାମୃତ ଦିବାକର ଦାସ—୧ମ ଅଧ୍ୟାୟ)

ଜଗନ୍ନାଥ ଦାଶ ପୂର୍ବଜନ୍ମଗତ ଶକ୍ତିବଳରେ ଖୁବ୍ ଅଳ୍ପ ବୟସରେ ସମସ୍ତ ବିଦ୍ୟା ଅର୍ଜ୍ଜନ କରିପାରିଥିଲେ । ଦ୍ୱାଦଶବର୍ଷ ବୟସରେ ସେ ଅମରକୋଷ, ବ୍ୟାକରଣ ଓ କାବ୍ୟ ନାଟକାଦି ଅଧ୍ୟୟନ କରିଥିଲେ । ଏଥିପୂର୍ବରୁ ଯଜୁର୍ବେଦ ଓ ସାମବେଦର ସଂହିତାମାନ ତାଙ୍କର କଣ୍ଠସ୍ଥ ଥିଲା । ଦ୍ୱାଦଶବର୍ଷ ବୟସରେ ତାଙ୍କର ପିତା ବିବାହ ପ୍ରସ୍ତାବ ଉଠାଇବାରୁ ଜଗନ୍ନାଥ ସେଥିରେ ସମ୍ମତ ହୋଇନଥିଲେ । ଓ ଅନ୍ୟ କେତେକ ଶାସ୍ତ୍ରର ଅଧ୍ୟୟନ ପରେ ବିବାହ କରିବେ ବୋଲି ମତବ୍ୟକ୍ତ କଲେ । ଅଳ୍ପଦିନ ମଧ୍ୟରେ ତାଙ୍କର ଯଶ ଚତୁର୍ଦ୍ଦିଗରେ ବ୍ୟାପିଗଲା ଓ ପଣ୍ଡିତ ସମାଜରେ ସେ ଜଣେ ଖ୍ୟାତନାମା ହୋଇ ଉଠିଲେ । ପ୍ରତିଦିନ ସେ ଜଗନ୍ନାଥ ଦେବଙ୍କ ଦର୍ଶନ ପାଇଁ ଶ୍ରୀକ୍ଷେତ୍ରକୁ ଯାଉଥିଲେ ଓ ଶ୍ରୀମନ୍ଦିରର ଦକ୍ଷିଣ ଦିଗରେ ବଟ ଗଣେଶଙ୍କ ନିକଟରେ ଦୈନିକ ଭାଗବତ ପାଠ କରୁଥିଲେ । ତାଙ୍କର ଭାଗବତର ସରଳ ସୁନ୍ଦର ବ୍ୟାଖ୍ୟା ଶୁଣି ସମବେତ ଜନତା ମୁଗ୍ଧ ଓ ଚକିତ ହେଉଥିଲେ ।

## ଶ୍ରୀଚୈତନ୍ୟଙ୍କ ଆଗମନ ଓ ଦୀକ୍ଷା ଗ୍ରହଣ—

ଶ୍ରୀଚୈତନ୍ୟଦେବ ଭାରତର ବିଭିନ୍ନ ତୀର୍ଥ ଭ୍ରମଣ କରି ଶ୍ରୀଜଗନ୍ନାଥ ଦେବଙ୍କ ଦର୍ଶନ ନିମନ୍ତେ ୧୫୦୯ ଖ୍ରୀ. ପୁରୀକୁ ଆସିଲେ, ସେତେବେଳକୁ ଜଗନ୍ନାଥ ଦାଶ ଊନବିଂଶତି ବର୍ଷ ବୟସରେ ପଦାର୍ପଣ କରିଥିଲେ । ଚୈତନ୍ୟ ବଡ଼ଦେଉଳରେ ପ୍ରବେଶ କରି ଯେତେବେଳେ ବଟମୂଳରେ ଉପସ୍ଥିତ ହେଲେ ଜଗନ୍ନାଥ ଦାଶଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଜଗନ୍ନାଥ ସେତେବେଳକୁ ଶ୍ରୀମଦ୍‌ଭାଗବତର ଦଶମସ୍କନ୍ଧ ବ୍ରହ୍ମସ୍ତୁତି

ପାଠକରୁଥିଲେ । ଚୈତନ୍ୟଦେବଙ୍କ ସଙ୍ଗେ ସାକ୍ଷାତ ହେବାରୁ ତାଙ୍କର ଭାବାବେଶ ହେଲା । ଜଗନ୍ନାଥଙ୍କ ଭାଗବତ ବ୍ୟାଖ୍ୟା ଶୁଣି ଚୈତନ୍ୟ ଅତ୍ୟନ୍ତ ମୁଗ୍ଧ ହୋଇ ପ୍ରେମବିଭୋରରେ ତାଙ୍କୁ ଆଲିଙ୍ଗନ କଲେ । ଏହି ଆଲିଙ୍ଗନ ଅବସ୍ଥା ଅଢ଼ାଇଦିନ ପର୍ଯ୍ୟନ୍ତ ରହିଥିଲା ବୋଲି ଦିବାକର ଦାସ ଉଲ୍ଲେଖ କରିଅଛନ୍ତି । (୧) ସଂଜ୍ଞାଲାଭ ପରେ ଶ୍ରୀଚୈତନ୍ୟଙ୍କ ସଙ୍ଗରେ ମନ୍ଦିର ପ୍ରଦକ୍ଷିଣ ଓ ଜଗନ୍ନାଥଙ୍କୁ ଦର୍ଶନ କଲେ । ଏହାପରେ ଚୈତନ୍ୟ ନିଜର ସହଚର ବର୍ଗଙ୍କୁ କହିଲେ—"ବ୍ରହ୍ମ ସର୍ବଭୂତରେ ପୂରିରହିଅଛନ୍ତି । ମୁଁ ଶ୍ରୀଜଗନ୍ନାଥଦେବଙ୍କୁ ଯେପରି ଭଜୁ ଓ ଭକ୍ତଙ୍କରେ ସର୍ବଦ ମୋର ସେହି ଭାବ । ବିଶେଷତଃ ଦାଶଙ୍କ ବିଷୟରେ ମୁଁ ଭୀତ । ଜାହିଁକିନା ଦାଶେ ତାହାଙ୍କର ସଙ୍ଗୀ । ଦାଶଙ୍କର ପାଦପଦ୍ମ ମହାପ୍ରେମର ଆକର । ମୁଁ ତାହା ନିଷ୍କାମଭାବରେ ଭଜୁଥିବି ।" ଏହାକହି ଜଗନ୍ନାଥ ଦାଶଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କଲେ । ଏହିପରି ପ୍ରତିଦିନ ଶ୍ରୀ ଚୈତନ୍ୟ ଜଗନ୍ନାଥ ଦେବଙ୍କୁ ଦର୍ଶନ କରିବାପାଇଁ ଆସିଲାବେଳେ କିଛି ସମୟ ବଟମୂଳରେ ରହି ଜଗନ୍ନାଥ

---

(୧) "ଶ୍ରୀ ଅତିବଡ଼ ଜଗନ୍ନାଥ | ଦଶମ ସ୍କନ୍ଧ ଭାଗବତ
ଶ୍ରୀ ବ୍ରହ୍ମ ସ୍ତୁତିର ବିସ୍ତର | କହନ୍ତି ଗଣେଶ ଆଗର

× × ×

ଏହି ସମୟେ ଶ୍ରୀ ଚୈତନ୍ୟ | ସଙ୍ଗତେ ଘେନି ସଖାଗଣ

× × ×

ପ୍ରେମ ଭରେଣ ଶ୍ରୀଚୈତନ୍ୟ | ଦାସଙ୍କୁ କଲେ ଆଲିଙ୍ଗନ
ଅଢ଼ାଇ ଦିବସ ପର୍ଯ୍ୟନ୍ତେ | ଦୁହେଁ ରହିଲେ ପ୍ରେମ ଚିତ୍ତେ ।"

('ଜଗନ୍ନାଥ ଚରିତାମୃତ'—୬ଷ୍ଠ ଅଧ୍ୟାୟ)

ଦାଶଙ୍କଠାରୁ ପୁରାଣ ଶ୍ରବଣ କରନ୍ତି । ଚୈତନ୍ୟଙ୍କ ସଙ୍ଗରେ ଥିବା ଗୌଡ଼ୀୟ ବୈଷ୍ଣବମାନେ ଏଥିରେ କ୍ଷୁବ୍ଧ ହୋଇ ଶ୍ରୀ ଚୈତନ୍ୟଙ୍କୁ କହିଲେ ଯେ ସାମ୍ପ୍ରଦାୟିକ ଦୀକ୍ଷା ଗ୍ରହଣକରି ନଥିବା ବ୍ୟକ୍ତିର ଅଙ୍ଗ ସ୍ପର୍ଶ କରିବା ବୈଷ୍ଣବ ଶାସ୍ତ୍ର ନିଷେଧ । ଜଗନ୍ନାଥ ଦାଶ ଯେତେବେଳେ ଏକଥା ଶୁଣିଲେ, ସେତେବେଳେ ଦୀକ୍ଷା ଗ୍ରହଣ ନିମନ୍ତେ ତାଙ୍କ ହୃଦୟ ବ୍ୟାକୁଳ ହୋଇ ଉଠିଲା । ଶ୍ରୀ ଚୈତନ୍ୟ ସେତେବେଳେ କାଶୀ ମିଶ୍ରଙ୍କ ଘରେ ଅବସ୍ଥାନ କରୁଥିଲେ । ଜଗନ୍ନାଥ ଦାଶ ଦୁଇ ହସ୍ତରେ ଦୁଇଟି ମହାପ୍ରସାଦ ହାଣ୍ଡି ଧରି ସେ ସ୍ଥାନରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ଶ୍ରୀ ଚୈତନ୍ୟ ଅତି ଆନନ୍ଦରେ କହିଲେ—"ପୂର୍ଣ୍ଣ ଭକ୍ତିମୟ ଦାସ ଆପଣେ ! ଆସିବା ହେଉ ।" ତାହାଶୁଣି ଜଗନ୍ନାଥ ଦାଶ କହିଲେ— "ଅଜ୍ଞା, ମୁଁ ଅନୁପଯୁକ୍ତ, ମୋତେ ସ୍ପର୍ଶ କରନ୍ତୁ ନାହିଁ । ଦୟାକରି ମୋତେ ଦୀକ୍ଷା ପ୍ରଦାନ କରନ୍ତୁ ।" ଏହାଶୁଣି ଚୈତନ୍ୟ ଅତ୍ୟନ୍ତ ଆନନ୍ଦିତ ହୋଇ ମତ୍ତ ବଳରାମ ଦାସଙ୍କୁ ଦୀକ୍ଷା ପ୍ରଦାନ କରିବାପାଇଁ ଆଦେଶ ଦେଲେ । ବଳରାମ ଦାସ ଜଗନ୍ନାଥଙ୍କୁ—

"ହରେ ରାମ ହରେ ରାମ ରାମ ରାମ ହରେ ହରେ,
ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।"

ଏହି ଦ୍ୱାତ୍ରିଂଶଦକ୍ଷର ପ୍ରେମମୟ ଷୋଡ଼ଶ ହରିନାମ ମହାମନ୍ତ୍ର ଉପଦେଶ ଦେଲେ ।

## ଅତିବଡ଼ ଉପାଧି ଓ ଗୌଡ଼ୀୟ ବୈଷ୍ଣବଙ୍କ ଈର୍ଷା—

ବଳରାମ ଦାଶଙ୍କଠାରୁ ମନ୍ତ୍ରୋପଦେଶ ଗ୍ରହଣ କରିଥିଲେ ସୁଦ୍ଧା ଜଗନ୍ନାଥ ଚୈତନ୍ୟଙ୍କୁ ସମାନ ଭାବରେ ଭକ୍ତି ଓ ସେବା

କରୁଥିଲେ । ନିଜକୁ ରାଧା ଓ ଚୈତନ୍ୟଙ୍କୁ କୃଷ୍ଣ ବୋଲି ଜ୍ଞାନ କରି ଶ୍ରୀ ଚୈତନ୍ୟଙ୍କର ସମସ୍ତ କାର୍ଯ୍ୟ କରୁଥିଲେ । ଏଥିରେ ସନ୍ତୁଷ୍ଟ ହୋଇ ଶ୍ରୀ ଚୈତନ୍ୟ ଦିନେ ଜଗନ୍ନାଥଙ୍କୁ ପୂର୍ବ ସିଦ୍ଧ ଅଙ୍ଗପ୍ରାପ୍ତି ବିଷୟରେ ପ୍ରଶ୍ନ କଲେ । ଏହାର ଉତ୍ତରରେ ପ୍ରୀତ ହୋଇ ଶ୍ରୀ ଚୈତନ୍ୟ କହିଲେ,—"ଦାସେ ! ତୁମ୍ଭେ ଅତିବଡ଼ ।" ଏହାକହି ନିଜର ଡୋରିକ ଉତ୍ତରୀୟ ତାହାଙ୍କ ଶିରରେ ବାନ୍ଧିଦେଲେ । ସେହିଦିନ ଠାରୁ ଜଗନ୍ନାଥ ଦାଶ 'ଅତିବଡ଼ ଗୋସ୍ୱାମୀ' ନାମରେ ପରିଚିତ । (୧)

ଗ୍ରନ୍ଥିଆଡ଼ ଜଗନ୍ନାଥ ଦାସଙ୍କର ଅତିବଡ଼ ଉପାଧି ବିଘୋଷିତ ହେଲା । ତାଙ୍କର ଯଶ ଓ ଶ୍ରେଷ୍ଠତ୍ୱର ଭୂରି ଭୂରି ପ୍ରଶଂସା ଶୁଣି କେତେକ ଈର୍ଷାପରାୟଣ ଗୌଡ଼ୀୟ ବୈଷ୍ଣବ ସହ୍ୟ କରି ପାରିଲେ ନାହିଁ । (୨) ସେମାନେ ପରସ୍ପର କୁହାକୁହି ହେଲେ ଯେ ଅମ୍ଭେମାନେ ଏତେକାଳ ଶ୍ରୀ ଚୈତନ୍ୟ ଗୋସାଇଁଙ୍କୁ ଦିବାରାତ୍ର ସେବା କଲୁଁ, ମାତ୍ର ଜଣେ ଓଡ଼ିଆ ବ୍ରାହ୍ମଣକୁ ହଠାତ୍ ଏତେବଡ଼ ଉପାଧିଟାଏ ଦେଇ ପକାଇଲେ । ଯେବେ ଅମ୍ଭେମାନେ ପୁଣି ଏହାଙ୍କ ସଙ୍ଗରେ ରହିବା ତେବେ ସେହି ଉତ୍କଳୀୟ ବ୍ରାହ୍ମଣର ଗୌରବ ସବୁବେଳେ ଶୁଣିବା । ସୁତରାଂ ଏହାଙ୍କ ସଙ୍ଗ ତ୍ୟାଗ କରିବା ହିଁ ବାଞ୍ଛନୀୟ । ତେଣୁ ସେମାନେ ଚୈତନ୍ୟଙ୍କୁ ଛାଡ଼ି ଯାଜପୁର

---

(୧) "ଦାସଙ୍କ ଶିରେ ବାନ୍ଧିଦେଲେ ଅତିବଡ଼ ବୋଲି ବୋଇଲେ ।
ଏବଡ଼ ଦୁର୍ଲ୍ଲଭ ଚରିତ ଆଜ କହିଲ ମୋ' ଅଗ୍ରତ ।"

('ଜଗନ୍ନାଥ ଚରିତାମୃତ'—୮ମ ଅଧ୍ୟାୟ)

(୨) "ଅତିବଡ଼ ବୋଲି ଡାକନ୍ତେ ବୈଷ୍ଣବ ଦୁଃଖ କଲେ ଚିତ୍ତେ ।"

(ତତ୍ରୈବ)

ଗ୍ଭଲିଗଲେ । କେତେଦିନ ପରେ ଶ୍ରୀ ଚୈତନ୍ୟ ଗୋଟିଏ ଶ୍ଳୋକ ଲେଖି (୧) ସେମାନଙ୍କୁ ଫେରାଇ ଆଣିବା ପାଇଁ ହରିଦାସ ନାମକ ଜଣେ ବୈଷ୍ଣବଙ୍କୁ ପଠାଇଲେ । ପତ୍ର ପାଇ ବୈଷ୍ଣବମାନେ କହିଲେ, ଯଦି ଶ୍ରୀ ଚୈତନ୍ୟ ସ୍ୱୟଂ ଆସନ୍ତି, ତେବେ ଆମ୍ଭେମାନେ ଫେରିଯିବୁଁ । ହରିଦାସଙ୍କ ଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଶ୍ରୀ ଚୈତନ୍ୟ ଜଗନ୍ନାଥ ଦାସ ଓ ଅନ୍ୟାନ୍ୟ କେତେକ ବୈଷ୍ଣବ ସହଚରଙ୍କୁ ସଙ୍ଗରେ ଧରି ଯାଜପୁର ଅଭିମୁଖରେ ଯାତ୍ରା କଲେ । ଚୈତନ୍ୟଙ୍କ ଆଗମନବାର୍ତ୍ତା ଶୁଣି ବୈଷ୍ଣବମାନେ ମହାସମାଦରରେ ଆସି ତାଙ୍କୁ ପାଛୋଟି ନେଲେ । ଆନନ୍ଦ ଓ ନାମସଂକୀର୍ତ୍ତନ ମଧ୍ୟରେ ଛଅଟି ଦିନ ଅତିବାହିତ ହୋଇଗଲା । ଦିନେ ଶ୍ରୀ ଚୈତନ୍ୟ ହସି ହସି ଜଗନ୍ନାଥଙ୍କୁ 'ଅତିବଡ଼' ବୋଲି ସମ୍ବୋଧନ କରିବାରୁ ସେହି ବୈଷ୍ଣବମାନେ ମର୍ମାହତ ହୋଇ ଛଳନା କରି ଚୈତନ୍ୟଙ୍କୁ କହିଲେ—"ଯତିମାନଙ୍କର ଏକ ସ୍ଥାନରେ ଅଧିକ ଦିନ ରହିବା ଉଚିତ ନୁହେଁ । ଆସନ୍ତୁ ପୁରୁଷୋତ୍ତମ ଫେରି ନ ଯାଇ ତୀର୍ଥ ପର୍ଯ୍ୟଟନ କରିବାକୁ ଯିବା ।" ଚୈତନ୍ୟ ତାହା ଶୁଣି କହିଲେ—"ମୁଁ ପୁରୁଷୋତ୍ତମ କ୍ଷେତ୍ର ଓ ଶ୍ରୀ ଜଗନ୍ନାଥ ଦେବଙ୍କୁ ଛାଡ଼ି କାହିଁ ଯିବି ନାହିଁ । ବିଶେଷତଃ ଶ୍ରୀ ଜଗନ୍ନାଥ ଦାସ ଅତିବଡ଼ ଉପାଧି ଲାଭର ଉପଯୁକ୍ତ ବୈଷ୍ଣବ । ସେ ପ୍ରକୃତ ପ୍ରେମଜ୍ଞ ।" ତେଣୁ ସେହି ବୈଷ୍ଣବମାନେ ଶ୍ରୀ ଚୈତନ୍ୟଙ୍କୁ ପରିତ୍ୟାଗ କରି ବନବିଷ୍ଣୁପୁରକୁ ଗ୍ଭଲିଗଲେ ଓ ସେଠାରେ ଏକବର୍ଷକାଳ ଅତିବାହିତ କଲେ । ବର୍ଷକ ପରେ ସେମାନେ ଶ୍ରୀ ଚୈତନ୍ୟଙ୍କୁ ଫେରାଇ ନେବା

(୧) "ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା,
ଅମାନିନେ ମାନଦେନ କୀର୍ତ୍ତନୀୟୋ ହରିଃ ସଦା ।"

ପାଇଁ ପୁଣି ମାଧୋଦାସ ନାମକ ଜଣେ ବୈଷ୍ଣବଙ୍କୁ ଶ୍ରୀକ୍ଷେତ୍ରକୁ ପଠାଇଲେ । ମାତ୍ର ଶ୍ରୀ ଚୈତନ୍ୟ ଶ୍ରୀକ୍ଷେତ୍ର ଛାଡ଼ି ଯିବାପାଇଁ ଅସମ୍ମତ ହେବାରୁ ସେମାନେ ନୀଳାଚଳକୁ ନ ଆସି ଶ୍ରୀ ବୃନ୍ଦାବନରେ ରହିଲେ । ଏହାଛଡ଼ା, ମହାମନ୍ତ୍ରକୁ ମଧ୍ୟ ପରିବର୍ତ୍ତିତ କରି "ହରେ କୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ; ହରେରାମ ହରେରାମ ରାମ ରାମ ହରେ ହରେ ।"—ଏହି ରୂପରେ ଜପ କଲେ ଏବଂ ଯୁଗଳ ଗାୟତ୍ରୀ ପରିବର୍ତ୍ତରେ କାମଗାୟତ୍ରୀ ଜପ କଲେ ।

## ଜଗନ୍ନାଥ ଦାସଙ୍କ ପ୍ରତିପତ୍ତି ଓ ଅଲୌକିକତା—

ଦିନେ ମହାରାଜା ପ୍ରତାପରୁଦ୍ର ଦେବ ଜଗନ୍ନାଥ ମହାପ୍ରଭୁଙ୍କ ଠାରେ କିପରି ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ବା ବ୍ରଜଭାବ ଉପଲବ୍ଧି କରି ପାରିବେ ବୋଲି ଶ୍ରୀ ଚୈତନ୍ୟଙ୍କୁ ପଚାରିଲେ । ଶ୍ରୀ ଚୈତନ୍ୟ ଜଗନ୍ନାଥ ଦାଶଙ୍କୁ ଏହି ବିଷୟ ବୁଝାଇ ଦେବାପାଇଁ ଆଦେଶ ଦେଲେ । ଜଗନ୍ନାଥ ଦାଶ ତାହା ପ୍ରତାପରୁଦ୍ର ଦେବଙ୍କୁ ବୁଝାଇ ଦେଲେ ଓ ମହାରାଜା ସେଥିରେ ସନ୍ତୁଷ୍ଟ ହୋଇ ଜଗନ୍ନାଥ ଦାଶଙ୍କର ପରମ ଭକ୍ତ ହେଲେ ।

ପ୍ରତିଦିନ ରାତ୍ରରେ ଦୁଇଜଣ ସ୍ତ୍ରୀ ଜଗନ୍ନାଥ ଦାଶଙ୍କ ଆଶ୍ରମକୁ ଆସି ତାଙ୍କର ସେବା କରନ୍ତି । ରାଜା ପ୍ରତାପରୁଦ୍ର ଦେବ ଏ ବିଷୟ ଶୁଣିପାରି ଜଗନ୍ନାଥଙ୍କ ଚରିତ୍ରରେ ଟିକିଏ ଆଶଙ୍କା କରି ବିଶେଷ ଲଜ୍ଜିତ ଓ ଦୁଃଖିତ ହେଲେ । ନିଜେ ମଧ୍ୟ ଦିନେ ରାତ୍ରରେ ଆସି ସ୍ୱଚକ୍ଷୁରେ ତାହା ଦେଖିଗଲେ । ଏହା ପରେ ସେ ସ୍ତ୍ରୀ ଦୁଇଜଣଙ୍କୁ ଧରିବାପାଇଁ ଚେଷ୍ଟାକଲେ; କିନ୍ତୁ ସେମାନେ ହଠାତ୍ ଅନ୍ତର୍ହିତା ହୋଇଯିବାରୁ ଧରିବା ସମ୍ଭବପର ହୋଇ ପାରିଲା ନାହିଁ । ଜଗନ୍ନାଥ ଦାଶ ଏକଥା ଜାଣିପାରି ରାଜାଙ୍କୁ କହିଲେ,—"ମହାରାଜା ଆପଣଙ୍କ

ଅନ୍ତଃପୁରରେ ଯେପରି ସ୍ତ୍ରୀ ପରିଚାରିକାମାନେ ମହାଦେଈଙ୍କର ସେବା କରନ୍ତି, ଏ ଦୁଇଟି ସ୍ତ୍ରୀ ମୋତେ ମଧ୍ଯ ସେହିପରି ସେବା କରନ୍ତି । ସେମାନେ ମୋର ସଖୀ—ମେଧା, ସୁମେଧା ।'' (୧) ରାଜା ଏହାଶୁଣି ଭୟ ଓ ଭକ୍ତିରେ ଜଗନ୍ନାଥ ଦାସଙ୍କଠାରେ କ୍ଷମା ପ୍ରାର୍ଥନା କଲେ ।

ଆଉ ଦିନେ ମହାରାଜା ଅତି ଉତ୍କୃଷ୍ଟ ଚନ୍ଦନ ବହୁମୂଲ୍ୟରେ କ୍ରୟକରି ଜଗନ୍ନାଥ ଦେବଙ୍କ ସେବା ପାଇଁ ଦାସଙ୍କ ହସ୍ତରେ ଅର୍ପଣ କଲେ । ଦାସେ ସେହି ଚନ୍ଦନ ଘୋର ଅଶ୍ରମ କାନ୍ଥରେ ବୋଳି-ଦେଲେ । ରାଜା ଏକଥା ଶୁଣି ବିଶେଷ ଦୁଃଖିତ ହେଲେ; ପରଦିନ ଜଗନ୍ନାଥ ଦର୍ଶନ କରି ଆସି ଦେଖିଲେ ଯେ ସେହି ଚନ୍ଦନ ମହାପ୍ରଭୁଙ୍କ ଅଙ୍ଗରେ ବୋଳା ହୋଇଛି । ଏହାଦ୍ୱାରା ସେ ବିଶେଷ ଅଷ୍ଟର୍ଯ୍ୟାନ୍ୱିତ ହୋଇ ଜଗନ୍ନାଥ ଦାସଙ୍କ ମହିମାର ପରିଚୟ ପାଇଲେ ।

ଦିନେ ରାଜା ପ୍ରତାପରୁଦ୍ର ଦେବ ରାଣୀଙ୍କୁ ଦୀକ୍ଷା ଦେବାପାଇଁ ଶ୍ରୀଗୁରୁ ନିର୍ବାଚନ କରିବା କଥା ଚୈତନ୍ୟଙ୍କୁ କହିଲେ । ତାହା ଶୁଣି ଚୈତନ୍ୟ ଜଗନ୍ନାଥ ଦାସଙ୍କୁ ଦୀକ୍ଷା ଦେବାପାଇଁ ଅନୁରୋଧ କଲେ । ଚୈତନ୍ୟଙ୍କ ଆଦେଶ ଅନୁସାରେ ଜଗନ୍ନାଥ ଦାସ ସ୍ତ୍ରୀ

---

(୧) ''ସୁମେଧା ମେଧା ବେନି ଦାସୀ ଅଃନ୍ତି ନିତ୍ୟ ଅଭିଳାଷୀ ।
ନିତ୍ୟରେ ସେବା କରୁଥିଲେ ସ୍ୱାମୀ ମର୍ତ୍ତ୍ୟେ ଜନ୍ମ ହୋଇଲେ ।
ସେବା କରିବାର ନିମନ୍ତେ ଆସି ମିଳନ୍ତି ନିତ୍ୟେ ନିତ୍ୟେ ।''

(ଚୈ: ଚ: ମୃ—୧୦ମ ଅଧ୍ୟାୟ)

ଭାବ ଧାରଣ କଲେ । (୧) ମହାରାଜା ତାଙ୍କଠାରେ ସ୍ତ୍ରୀଚିହ୍ନ ଦେଖି ଅତ୍ୟନ୍ତ ବିସ୍ମିତ ହୋଇ ରାଣୀଙ୍କୁ ଦୀକ୍ଷା ଦେବାପାଇଁ ଦାସଙ୍କୁ ଅନୁରୋଧ କଲେ ।

ଥରେ ରାଜା ପ୍ରତାପରୁଦ୍ର ଦେବ ପାରିଷଦ ପରିବେଷ୍ଟିତ ହୋଇ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ପରେ ବଟମୂଳକୁ ଗଲେ । ସେତେବେଳେ ଜଗନ୍ନାଥ ଦାସ ବଟମୂଳରେ ବସି ପୁରାଣ ପାଠ କରୁଥିଲେ । ସେଠାରେ ଜଗନ୍ନାଥଙ୍କୁ ଦେଖି ମହାରାଜାଙ୍କର ଭାବାବେଶ ହେଲା । ଜଗନ୍ନାଥ ଦାସଙ୍କ ପ୍ରଶଂସା ଶୁଣି ତାଙ୍କ ପ୍ରେମ ପୁଲକିତ ହେଲା । ସେ ଦେଖିଲେ ଯେ, ଅତିବଡ଼ ଗୋସ୍ୱାମୀ ଅଷ୍ଟଭୁଜ ହୋଇ ଅଛନ୍ତି । ତାଙ୍କର ଚାରୋଟି ହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଦୁଇଟି ହସ୍ତରେ ଧନୁଶର ଓ ଅନ୍ୟ ଦୁଇଟି ହସ୍ତରେ ବଂଶୀ ରହିଅଛି । (୨) ସେ ଶ୍ୟାମବିଗ୍ରହ ଧାରଣ କରି ଅଚିନ୍ତ୍ୟ ଶକ୍ତି ସମ୍ପନ୍ନ ଭାବରେ ଶୋଭା ପାଉ ଅଛନ୍ତି ।

ଦିନେ ବ୍ରହ୍ମାନନ୍ଦ ନାମକ ଜଣେ ମାୟାବାଦୀ ସନ୍ୟାସୀ ଶତଶିଷ୍ୟ ପରିବେଷ୍ଟିତ ହୋଇ ଶ୍ରୀକ୍ଷେତ୍ରରେ ଉପସ୍ଥିତ ହେଲେ ।

---

(୧) "ପୂର୍ବେ ପୁରୁଷ ଅଙ୍ଗେ ଥିଲି    ପ୍ରେମ ଭାବରେ ସ୍ତ୍ରୀ ହେଲି ।
ଦେଖ ଅଦ୍ଭୁତ ଦୃଶ୍ୟ ମୋର,    ସିନ୍ଧା କୌପୁନରେ ରୁଧିର ।
× × ×
ସତାଇଶ ଦିନ ପୁରୁଷ,    ତିନି ଦିନ ସ୍ତ୍ରୀଙ୍କ ବେଶ ।"
(ଜ: ଚ: ମୃ:—୧୧ଶ ଅଧ୍ୟାୟ)

(୨) "ଅଷ୍ଟ ବାହୁର୍ଜଗନାଥ ଦାସୋ ବଂଶୀ ଧନୁଃଶରାନ୍
ଶଙ୍ଖ ଚକ୍ର ଗଦା ପଦ୍ମଂ ବିଭ୍ରଚ୍ଛ୍ୟାମୋ ଽଭବତ୍ତଦା ।"
('ଜଗନ୍ନାଥ ଚରିତ ସୁଧାସିନ୍ଧୁ'—ଜୀବଗୋସ୍ୱାମୀ)

ସେ ଗୋଟିଏ ପତାକା ଧରିଥା'ନ୍ତି ଓ ତାଙ୍କ ସଙ୍ଗରେ ଗୋଟିଏ ତ୍ରିକୋଣାକାର ଛତ୍ର ଥାଏ (୧) ମହାରାଜାଙ୍କ ପାଖରେ ପହଞ୍ଚି କହିଲେ—"ପଣ୍ଡିତ ମାନଙ୍କୁ ଡକାଅ, ମୋତେ ବ୍ରହ୍ମଭିକ୍ଷା ଦିଅନ୍ତୁ। ବ୍ରହ୍ମତତ୍ତ୍ୱର ସମସ୍ୟାରେ ମୋତେ ପରାଜୟ କଲେ ମୁଁ ଭିକ୍ଷା ଗ୍ରହଣ କରିବି। ନଚେତ୍ ମୁଁ ଏଠାରୁ ଗୋଟିଏ ଚତୁଷ୍କୋଣ ଛତ୍ର ନେଇ ବିଦାୟ ଗ୍ରହଣ କରିବି। ଦିଗ୍‌ବିଜୟୀ ସନ୍ୟାସୀଙ୍କ ସହିତ ଯୁକ୍ତି କରିବା ପାଇଁ କୌଣସି ପଣ୍ଡିତ ସାହସ କଲେ ନାହିଁ। ରାଜା ଶେଷକୁ ଅତିବଡ଼ ଜଗନ୍ନାଥଙ୍କୁ ଡକାଇ ତାଙ୍କ ସଙ୍ଗେ ତର୍କ କରିବା ପାଇଁ ଅନୁରୋଧ କଲେ। ଜଗନ୍ନାଥ ଦାଶ ଯୁକ୍ତି ତର୍କରେ ଅଦ୍ୱୈତବାଦ ଖଣ୍ଡନ କରି ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ଅଚିନ୍ତ୍ୟ ଭେଦା ଭେଦବାଦ ପ୍ରତିପାଦନ କଲେ, ଏଥିରେ ବ୍ରହ୍ମାନନ୍ଦଙ୍କର ଗର୍ବ ଚୂର୍ଣ୍ଣୀଭୂତ ହେଲା, ସେ ତ୍ରିକୋଣାକାର ଛତ୍ର ଓ ପତାକା ପରିତ୍ୟାଗ କଲେ। ଜଗନ୍ନାଥ ଦାଶଙ୍କର ଏହିପରି ଅଲୌକିକ କାର୍ଯ୍ୟରେ ଜନସାଧାରଣ ତାଙ୍କ ପ୍ରତି ବିଶେଷ ଆକୃଷ୍ଟ ହେଲେ। ତା'ଙ୍କ ଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପ୍ତ ହେଲା।

ମୃତ୍ୟୁ—

ଜଗନ୍ନାଥ ଦାଶ ସମୁଦ୍ର ତୀରରେ ଗୋଟିଏ ଭଜନ କୁଟୀର ସ୍ଥାପନ କରିଥିଲେ। କଥିତ ଅଛି ଯେ, ଦାରୁଣ ସମୁଦ୍ରର ଗର୍ଜ୍ଜନରେ ଭଜନ ସ୍ମରଣ ପାଇଁ ବିଶେଷ ଅସୁବିଧାର ସମ୍ମୁଖୀନ ହେବାରୁ

(୧) "ଏକାଳେ କ୍ଷେତ୍ରହୋଇମେ ଆସି ବ୍ରହ୍ମାନନ୍ଦ ନାମେ ସନ୍ୟାସୀ।
ତ୍ରିକୋଣ ଛତ୍ରଧରି ଶିରେ ଶତେ ପାଠକ ସଙ୍ଗତରେ।"
('ଜଗନ୍ନାଥ ଚରିତାମୃତ'—୧୩ଶ ଅଧ୍ୟାୟ)

ଜଗନ୍ନାଥ ଦେବଙ୍କୁ ପ୍ରାର୍ଥନା କଲେ । ମହାପ୍ରଭୁଙ୍କ ଅଜ୍ଞାତରେ ସମୁଦ୍ର ସପ୍ତସ୍ତର ଦୂରକୁ ଘୁଞ୍ଚିଗଲା । ସେହି ଦିନଠାରୁ ଏହି କୁଟୀର 'ସାତଲହଡ଼ି ମଠ' ନାମରେ ପରିଚିତ । ଜଗନ୍ନାଥ ଦାଶ ସେହି ସାତଲହଡ଼ି ମଠରେ ରହି ୬୦ ବର୍ଷ କାଳ ଭଜନ ଓ ଜଗନ୍ନାଥଙ୍କ ଆରାଧନାରେ ଅତିବାହିତ କଲେ । ଦିନେ ସେ ସମସ୍ତ ଶିଷ୍ୟଙ୍କୁ ଶ୍ରୀରାଧାକୃଷ୍ଣ ଯୁଗଳୋପାସନା ତତ୍ତ୍ୱ ଉପଦେଶ ଦେଲେ । ଏହାପରେ ନିଜର କାଷ୍ଠ ପାଦୁକା ଦ୍ୱୟ ପ୍ରଧାନ ଶିଷ୍ୟ ହରିଦାସଙ୍କୁ ଦେଇ କହିଲେ—"ଏହାକୁ ପୀଠର ଅଧିକାରୀ ରୂପେ ସ୍ଥାପନ କର ।" ଏହାପରେ ସେ ଯୋଗାସନରେ ବସି ରାଧାକୃଷ୍ଣ ଯୁଗଳ ମନ୍ତ୍ର ଚିନ୍ତାରେ ନିମଗ୍ନ ହେଲେ ଓ ସେହିପରି ଅବସ୍ଥାରେ ତାଙ୍କର ଆତ୍ମା ସ୍ଥୂଳଶରୀର ତ୍ୟାଗ କରି ଜଗନ୍ନାଥ ଦେବଙ୍କର ଅଙ୍ଗରେ ଲୀନ ହୋଇଗଲା । ଶିଷ୍ୟମାନେ ତାଙ୍କର ମୃତ ଶରୀରକୁ ସେହି ସାତଲହଡ଼ି ମଠରେ ସମାଧି ଦେଲେ ।

୨ । ଗ୍ରନ୍ଥ ରଚନା—

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ପୂର୍ବଜନ୍ମ ବିଦ୍ୟାର ପ୍ରଭାବରୁ ଜଗନ୍ନାଥ ଦାଶ ଅତି ଅଳ୍ପ ବୟସରେ ବିପୁଳ ଜ୍ଞାନର ଅଧିକାରୀ ହୋଇପାରିଥିଲେ । ଜ୍ଞାନକୁ କେବଳ ନିଜ ମଧ୍ୟରେ ସୀମାବଦ୍ଧ କରି ରଖିବାକୁ ସେ ଚାହୁଁ ନଥିଲେ । ଜଗତର କଲ୍ୟାଣ ନିମନ୍ତେ ଓ ଜନ ସାଧାରଣଙ୍କ ବୋଧଗମ୍ୟ ପାଇଁ ତାହା ସେ ଗ୍ରନ୍ଥାକାରରେ ରଚନା କରିଥିଲେ । କେବଳ ଓଡ଼ିଆ ନୁହେଁ, ସଂସ୍କୃତ ଭାଷାରେ ମଧ୍ୟ ସେ ଅନେକ ଗ୍ରନ୍ଥ ରଚନା କରିଥିଲେ । ନିମ୍ନରେ ଏହି ଗ୍ରନ୍ଥ ଗୁଡ଼ିକର ମୋଟାମୋଟି ତାଲିକା ପ୍ରଦାନ ହେଲା ।

ସଂସ୍କୃତରେ—(୧) କୃଷ୍ଣ ଭକ୍ତି କଳ୍ପଲତା, (୨) କୃଷ୍ଣ ଭକ୍ତି କଳ୍ପଲତା ଫଳଂ। (୩) ନିତ୍ୟ ଗୁପ୍ତମାଳା। (୪) ଉପାସନା ଶତକଂ। (୫) ପ୍ରେମସୁଧାମ୍ବୁଧିଃ। (୬) ନିତ୍ୟାଗୁର। (୭) ଶ୍ରୀରାଧାରସ ମଞ୍ଜରୀ। (୮) ନୀଳାଦ୍ରି ଶତକଂ। (୯) ଜଗନ୍ନାଥ ଚରିତାମ୍ଭୋଧି ସରଣୀ।

ଓଡ଼ିଆରେ—(୧) ଭାଗବତ। (୨) ଦାରୁବ୍ରହ୍ମ ଗୀତା। (୩) ତୁଳାଭିଣା। (୪) ମୃଗୁଣୀ ସ୍ତୁତି। (୫) ପାଷାଣ୍ଡ ଦଳନ। (୬) ଗଜସ୍ତୁତି। (୭) ଦଣ୍ଡିଚୋଲ। (୮) ଅର୍ଥ କୋଇଲି (୯) ଗୁପ୍ତ ଭାଗବତ। (୧୦) ମହାଭାରତ।

ଏତଦ୍ ବ୍ୟତୀତ ତାଙ୍କ 'ଜଗନ୍ମୋହନ ମଣିମାଳିକା' ନାମକ ଗୋଟିଏ ଗ୍ରନ୍ଥ ଓଡ଼ିଆରେ ରଚନା କରିଅଛନ୍ତି। ଏହାର ପୋଥିଟି ଉତ୍କଳ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀରେ ସଂରକ୍ଷିତ।

ଭାଗବତ—

ଭାଗବତ ରଚନା ପାଇଁ ଜଗନ୍ନାଥ ଦାସ ବ୍ୟାସଦେବଙ୍କ ସଂସ୍କୃତ ଭାଗବତକୁ ଅବଲମ୍ବନରୂପେ ଗ୍ରହଣ କରିଅଛନ୍ତି। ମାତ୍ର ଏହା ସଂସ୍କୃତ ଭାଗବତର ଅକ୍ଷରିକ ଅନୁବାଦ ନୁହେଁ। ମୂଳ ଭାଗବତର ଶ୍ଳୋକ ଗୁଡ଼ିକର ଭାବ ଗ୍ରହଣ କରି ଜଗନ୍ନାଥ ଦାସ ନିଜର ମୌଳିକତା ଦର୍ଶାଇ ଅଛନ୍ତି। ସେଥିପାଇଁ ଅନେକ ସ୍ଥଳରେ ସଂସ୍କୃତ ଭାଗବତଠାରୁ ଏହାର ପ୍ରଭେଦ ସହଜରେ ଉପଲବ୍ଧି କରିହୁଏ। ସଂସ୍କୃତ ଭାଗବତର ଶ୍ଳୋକ ଗୁଡ଼ିକୁ ନିଜସ୍ୱ କରିବାରେ ଜଗନ୍ନାଥ ଦାସ କେତେଦୂର ସମର୍ଥ ହୋଇଛନ୍ତି, ତାହାର ପ୍ରମାଣ ନିମ୍ନଲିଖିତ ଏହି ଗୋଟିଏ ଦୃଷ୍ଟାନ୍ତରୁ ମିଳି ପାରିବ। ସଂସ୍କୃତ ଭାଗବତରେ ଅଛି—"ନିଗମ କଳ୍ପତରୋର୍ଗଳିତଂ ଫଳଂ ଶୁକ

ମୁଖାଦମୃତଦ୍ରବସଂଯୁତମ୍ । ପିବତ ଭାଗବତଂ ରସମାଳୟଂ
ମୁହୁରହୋ ରସିକାଃଭୁବିଭାବୁକାଃ ।”

(୧ମ ସ୍କନ୍ଧ, ୧ମ ଅଧ୍ୟାୟ, ୩ୟ ଶ୍ଳୋକ )

ଜଗନ୍ନାଥ ଦାସ ତାଙ୍କୁ ଓଡ଼ିଆରେ ଲେଖିଲେ—

“ସକଳ ବେଦ ହୋଇ ବୃକ୍ଷେ, ଫଳ ଫଳିଲେ ଅନ୍ତରୀକ୍ଷେ ।
କେତେହେଁ ଦିନେ ପାଚିଗଲେ, ବୃନ୍ତୁ ପଡ଼ିଲେ ବାୟୁ ବଳେ ।
ଶୁକ ଧାଇଁଲେ ତାହା ଦେଖି, ପକ୍ଷୀଙ୍କ ସଙ୍ଗତ ଉପେକ୍ଷି ।
ତୋପେ ଅଧରେ ଯତନ, ଭୂତଳରେ ସୁରଙ୍ଗ ଦଶିଲ ।
ତହୁଁ ଗଳିଲା ରସ ସାର, କି ଅବା ଦେବା ପଟାନ୍ତର ।
ଅମୃତ ନିନ୍ଦେ ସ୍ୱାଦୁପଣେ, ସୁଜନେ ପିଅ ଅନୁକ୍ଷଣେ ।
ଅନନ୍ଦେ କର ସୁଧାପାନ, ଯେତେଣେ ପାଇବ ଦିବ୍ୟଜ୍ଞାନ ।
ଏ ରସ ଗୁରୁ ବେଦ ମୂଳ, ନିଗମ ବୃକ୍ଷର ଏ ଫଳ ।
ପିଅ ଜୀବନ ଅନ୍ତଯାଏ, ଯେବେ ବଞ୍ଚିବ ମାୟା ମୋହେ ।”

ଭାଷାର ସରଳତା, ଛନ୍ଦର ମାଧୁର୍ଯ୍ୟ ହିଁ ଏହାର ବିଶେଷତ୍ୱ । ଏଥିରୁ ତାଙ୍କର ଅନୁବାଦ କୌଶଳର ପରିଚୟ ମଧ୍ୟ ପାଇ ପାରିବା । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ମତରେ ଜଗନ୍ନାଥଙ୍କ ଭାଗବତରେ ଅନେକ ଗୁଡ଼ିଏ ବିଶେଷତ୍ୱ ପରିଦୃଷ୍ଟ ହୁଏ । (୧) । ଯଥା— ମୂଳ ଗ୍ରନ୍ଥର ଶ୍ଳୋକ ସଂଖ୍ୟା ସହିତ ଏହାର ଶ୍ଳୋକ ସଂଖ୍ୟା ସମାନ ନୁହେଁ । ସ୍କନ୍ଧମାନଙ୍କରେ ଅଧ୍ୟାୟ ସଂଖ୍ୟାରେ ମଧ୍ୟ ପ୍ରଭେଦ ଦେଖାଯାଏ । ଏହାଛଡ଼ା, ମୂଳ ଭାଗବତରେ ନ ଥିବା କେତେକ

(୧) ‘ଓଡ଼ିଆ ସାହିତ୍ୟର ପରିଚୟ’—୧ମ ଖଣ୍ଡ—୨୫୦ ପୃଷ୍ଠା ।

ବିଷୟ ମଧ୍ୟ ଜଗନ୍ନାଥଙ୍କ ଭାଗବତରେ ସ୍ଥାନ ପାଇଅଛି । (୧) । ଭାଗବତର ଭାଷା ଅତି ସରଳ । ଓଡ଼ିଶାର ପୁର-ପଲ୍ଲୀରେ ଥିବା 'ଭାଗବତ ଟୁଙ୍ଗୀ' ଏହାର ପ୍ରକୃଷ୍ଟ ନିଦର୍ଶନ । ଭାଷାର ସରଳତା, ଭାବର ମାଧୁରୀ ଓ ନୀତି ବାକ୍ୟର ବହୁଳତା ପାଇଁ ଆଜି ଏହା ଏତେ ଜନପ୍ରିୟ ହୋଇ ପାରିଅଛି । ଏହାଛଡ଼ା, ଏଥିରେ ବ୍ୟବହୃତ ନବାକ୍ଷରୀ ବୃତ୍ତି ଜନପ୍ରିୟତା ହେତୁ ପରବର୍ତ୍ତୀ କବିମାନଙ୍କ ଦ୍ୱାରା "ଭାଗବତ ବୃତ୍ତ" ନାମରେ ବ୍ୟବହୃତ ହୋଇଅଛି ।

ତୁଳାଭିଣା—

ତତ୍ତ୍ୱରୂପକ ତୁଳାକୁ ଏ ଗ୍ରନ୍ଥରେ ଭିଣା ଯାଇଅଛି । ଏଥିରେ ଜଗତର ଉତ୍ପତ୍ତି ସମ୍ବନ୍ଧରେ ଶିବ ପାର୍ବତୀଙ୍କ ନିକଟରେ ଗୂଢ଼ତତ୍ତ୍ୱ ପ୍ରକାଶ କରି ଅଛନ୍ତି । ରାମାୟଣ ବେଦ, ମହାଭାରତ ବେଦ ପ୍ରଭୃତି ତତ୍ତ୍ୱମୂଳକ ବ୍ୟାଖ୍ୟା ଦ୍ୱାରା ଏହି ଗ୍ରନ୍ଥଟି ପୂର୍ଣ୍ଣ । ଗଦ୍ୟର ବ୍ୟବହାର ଏଥିରେ ପରିଦୃଷ୍ଟ ହୁଏ ।

ଅର୍ଥକୋଇଲି—

ଏଥିରେ ମାର୍କଣ୍ଡ ଦାସଙ୍କ ରଚିତ 'କେଶବ କୋଇଲି'ର ବ୍ୟାଖ୍ୟା କରିଯାଇ ଅଛି । ଏଥିପୂର୍ବରୁ ଓଡ଼ିଆ ସାହିତ୍ୟରେ ଟୀକା ରଚନା ଆଦୌ ନ ଥିଲା । ତେଣୁ, ଏହାଦ୍ୱାରା ଜଗନ୍ନାଥ ଦାସ ଓଡ଼ିଆ ସାହିତ୍ୟର ପ୍ରଥମ ଟୀକାକାର ରୂପେ ପରିଚିତ ହୋଇଛନ୍ତି ଓ ଏହି ଦୃଷ୍ଟିରୁ ଏ ଗ୍ରନ୍ଥଟି ଓଡ଼ିଆ ସାହିତ୍ୟରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ।

(୧) ତଦ୍ଦୈବ—୨୫୨ ପୃଷ୍ଠା ।

## ମୃଗୁଣୀ ସ୍ତୁତି—

ବ୍ୟାଧ ଦ୍ୱାରା ଭୀତିଗ୍ରସ୍ତା ମୃଗୁଣୀର ଭଗବାନଙ୍କ ନିକଟରେ ଆକୁଳ ପ୍ରାର୍ଥନା ହେଉଛି ଏହି ଗ୍ରନ୍ଥର ବିଷୟବସ୍ତୁ । କରୁଣ ରସ ଦ୍ୱାରା ସମସ୍ତ ଗ୍ରନ୍ଥଟି ସିକ୍ତ । ଏହାକୁ ପାଠକଲେ ଯେ କୌଣସି ପାଠକର ଚିତ୍ତ ଦ୍ରବୀଭୂତ ହୁଏ । ଭାଷାର ସରଳତା, ରସୋପଲବ୍‌ଧିର ବିଶେଷ ସହାୟକ ହୋଇ ପାରିଅଛି ।

ଜଗନ୍ନାଥଙ୍କର ଓଡ଼ିଆ ଗ୍ରନ୍ଥମାନଙ୍କ ମଧ୍ୟରୁ ଅଳ୍ପ କେତୋଟିର ଆଲୋଚନା କରାଗଲା । ମୋଟାମୋଟି କହିବାକୁ ଗଲେ, ଜଗନ୍ନାଥ ଦାଶଙ୍କର ରଚନାମାନଙ୍କରେ ଭାଷାର ସରଳତା ଓ ଭାବର ଗଭୀରତା ହେଉଛି ପ୍ରଧାନ ବିଶେଷତ୍ୱ । ଏଥିରୁ ତାଙ୍କର ଜୀବନ ଦର୍ଶନ ଓ ତତ୍କାଳୀନ ସମାଜର ଚିତ୍ର ମଧ୍ୟ ଅନେକ ମିଳେ । ପରବର୍ତ୍ତୀ ଯୁଗର ଅନେକ କବିଙ୍କ ଉପରେ ଜଗନ୍ନାଥ ଦାଶଙ୍କର ଭାଷା ପ୍ରଭାବ ବିସ୍ତାର କରି ପାରିଅଛି ।

## ୩ । ଜୀବନ ଦର୍ଶନ—

ଜଗନ୍ନାଥ ଦାଶଙ୍କ ଜୀବନ ଦର୍ଶନ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ତାହାର ପୃଷ୍ଠଭୂମି ପ୍ରତି ବିଶେଷ ଦୃଷ୍ଟି ଦେବା ଆବଶ୍ୟକ । ଧର୍ମ କ୍ଷେତ୍ରରେ ଓଡ଼ିଶାରେ ଉତ୍‌ଥାନ, ପତନ ଲାଗି ରହିଅଛି । ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଯଶୋବନ୍ତ— ଏହି ପଞ୍ଚସଖାଙ୍କୁ ବୈଷ୍ଣବ ଧର୍ମ ସାହିତ୍ୟର ପ୍ରଧାନ ପ୍ରଚାରକ ରୂପେ ଗ୍ରହଣ କରାଯାଏ । ତତ୍‌ପୂର୍ବରୁ ଓଡ଼ିଶାରେ ବ୍ରାହ୍ମଣ୍ୟ, ବୌଦ୍ଧ, ଶୈବ, ଶାକ୍ତ ପ୍ରଭୃତି ଧର୍ମଗୋଷ୍ଠୀର ଆବିର୍ଭାବ ଓ ପ୍ରଭାବ ବିଶେଷ ସ୍ଥାନ ଲାଭ କରିଅଛି । କେତେକଙ୍କ ମତରେ ଖ୍ରୀଷ୍ଟପୂର୍ବ

ପଞ୍ଚମ ଶତାବ୍ଦୀର ଶେଷ ଭାଗରେ, ଅର୍ଥାତ୍ ନନ୍ଦ ରାଜତ୍ୱ କାଳରେ ଓଡ଼ିଶାରେ ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ଓ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ବୌଦ୍ଧ ଧର୍ମର ପ୍ରଭାବ ବିଶେଷ ଦେଖାଯାଏ । ବୌଦ୍ଧ ମତରେ ଶୂନ୍ୟ ଭାବନା ଦ୍ୱାରା ମନୁଷ୍ୟ ଶୂନ୍ୟରେ ଲୀନ ହୁଏ । ଏହାର ନାମ 'ନିର୍ବାଣ' । ଏହି ମତକୁ ଶଙ୍କରାଚାର୍ଯ୍ୟ ଖଣ୍ଡନ କରି ଅଦ୍ୱୈତ ବାଦର ପ୍ରଚାର କଲେ । ତାଙ୍କ ମତରେ ନିର୍ଗୁଣ ବ୍ରହ୍ମଙ୍କୁ ଉପାସନା କଲେ ଜୀବ ସହଜରେ ମୋକ୍ଷ ପ୍ରାପ୍ତ ହୁଏ । ପଞ୍ଚସଖାଙ୍କ ପୂର୍ବରୁ ରାମାନୁଜ, ନିମ୍ବାର୍କ ପ୍ରଭୃତି ବୈଷ୍ଣବମାନେ ଓଡ଼ିଶାକୁ ଆସି ବୈଷ୍ଣବ ଧର୍ମର ନବ ନବ ମାର୍ଗ ପ୍ରଚାରକରି ଯାଇଥିଲେ । ରାମାନୁଜ, ମାଧ୍ୱାଚାର୍ଯ୍ୟ, ବିଷ୍ଣୁସ୍ୱାମୀ ଓ ନିମ୍ବାର୍କ ଏହି ଚାରିଜଣଙ୍କୁ ଚତୁଃସମ୍ପ୍ରଦାୟ ବୈଷ୍ଣବ କୁହାଯାଏ । ରାମାନୁଜ ବିଶିଷ୍ଟାଦ୍ୱୈତବାଦୀ, ମାଧ୍ୱ ଶୁଦ୍ଧଦ୍ୱୈତବାଦୀ, ବିଷ୍ଣୁସ୍ୱାମୀ ଶୁଦ୍ଧାଦ୍ୱୈତବାଦୀ ଓ ନିମ୍ବାର୍କ ଦ୍ୱୈତାଦ୍ୱୈତବାଦୀ । ମାଧ୍ୱାଚାର୍ଯ୍ୟ ରୁକ୍ମିଣୀଙ୍କର ଉପାସକ । ତାଙ୍କ ମତରେ ମୁକ୍ତି ଶ୍ରେଷ୍ଠ ସାଧ୍ୟ । ଶ୍ରୀକୃଷ୍ଣଙ୍କ ଚରଣରେ ସମସ୍ତ ସମର୍ପଣ କରିବା ଭକ୍ତର ଶ୍ରେଷ୍ଠ ସାଧନା । ନିମ୍ବାର୍କ ହେଉଛନ୍ତି ଜଣେ ପୁରାତନ ଆଚାର୍ଯ୍ୟ । ଗୋବର୍ଦ୍ଧନ ପର୍ବତ ନିକଟରେ ତାଙ୍କର ଅସ୍ଥାନ ଥିଲା ବୋଲି କେହି କେହି କହନ୍ତି । ଏହାଙ୍କ ଅନ୍ୟ ନାମ ନିମ୍ବାଦିତ୍ୟ ଓ ଅରୁଣି । ମାଧ୍ୱଙ୍କ ମତ ସହିତ ଏହାଙ୍କ ମତ ପ୍ରାୟ ସମାନ । ତେବେ, ମାଧ୍ୱ କେବଳ ଦ୍ୱୈତବାଦୀ, କିନ୍ତୁ ନିମ୍ବାଦିତ୍ୟ ଦ୍ୱୈତ ଓ ଅଦ୍ୱୈତ ଉଭୟକୁ ସ୍ୱୀକାର କରନ୍ତି । ନିମ୍ବାଦିତ୍ୟଙ୍କ ମତରେ—ସକଳ ବସ୍ତୁ ବ୍ରହ୍ମାତ୍ମକ । ବସ୍ତୁ ବିଜ୍ଞାନ ହିଁ ନିଖିଳ ବସ୍ତୁର ଯଥାର୍ଥ ତତ୍ତ୍ୱ । ସ୍ଥାନ ବିଶେଷରେ ଦ୍ୱୈତ, ଅଦ୍ୱୈତ ଓ ଦ୍ୱୈତାଦ୍ୱୈତ ମତର ପ୍ରତିଷ୍ଠା ନିତାନ୍ତ ବାଞ୍ଛନୀୟ । ଶ୍ରୀକୃଷ୍ଣଙ୍କ

ପାଦପଦ୍ମ ବ୍ୟତୀତ ଜୀବର ଅନ୍ୟ ଗତି ନାହିଁ । ରାଧିକାଙ୍କ ଅନୁଗତି ବ୍ୟତୀତ କୃଷ୍ଣ ଲୀଳାଗତ ଶୃଙ୍ଗାରରସ କଦାଚ ଲଭ ହୁଏ ନାହିଁ ।

କେହି କେହି କହନ୍ତି ଶ୍ରୀ ଚୈତନ୍ୟଦେବଙ୍କ ମତ ନିମ୍ବାଦିତ୍ୟଙ୍କର ମତ ସଙ୍ଗେ ସମାନ । ମାତ୍ର ତାହା ନୁହେଁ । ଚୈତନ୍ୟ ଅଚିନ୍ତ୍ୟ ଭେଦାଭେଦର ପୃଷ୍ଠପୋଷକ । ଦ୍ୱୈତାଦ୍ୱୈତ ଓ ଅଚିନ୍ତ୍ୟ ଭେଦାଭେଦ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ରହିଛି । ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ । ତାଙ୍କର ତ୍ରିବିଧ ଅବତାର ରହିଛି । ଯଥା—ଅଂଶାବତାର, ଗୁଣାବତାର ଓ ଶକ୍ତ୍ୟାବେଶାବତାର । ପୁନଶ୍ଚ, ଶ୍ରୀକୃଷ୍ଣଙ୍କର ତ୍ରିବିଧ ଶକ୍ତି । ସେଥିରେ ବୈକୁଣ୍ଠରେ ଲକ୍ଷ୍ମୀଗଣ, ଦ୍ୱାରକାରେ ମହିଷୀଗଣ ଓ ଏ ଦୁଇଟିଙ୍କ ଅପେକ୍ଷା ଶ୍ରେଷ୍ଠତର ହୋଇଛନ୍ତି ବ୍ରଜ ଗୋପୀଗଣ । ଶକ୍ତି ଓ ଶକ୍ତିମନ୍ତଙ୍କ ଠାରୁ ଯେ କେତେବେଳେ ଅଭେଦ, ପୁଣି କେତେବେଳେ ନିତ୍ୟଭେଦ । ଏହିପରି ଏକ ଅଖଣ୍ଡ ତତ୍ତ୍ୱ ତାଙ୍କର ଅଚିନ୍ତ୍ୟ ଶକ୍ତି ଦ୍ୱାରା ପ୍ରତିପାଦିତ ହୁଏ । ଏହି ସିଦ୍ଧାନ୍ତର ନାମ, ଅଚିନ୍ତ୍ୟଭେଦାଭେଦ ତତ୍ତ୍ୱ । ମାଧ୍ୱ, ନିମ୍ବାର୍କ ପ୍ରଭୃତି ଆଚାର୍ଯ୍ୟମାନେ ପାରକୀୟ ରସକୁ ସ୍ୱୀକାର କରି ନାହାନ୍ତି; କିନ୍ତୁ ଗୌଡ଼ୀୟ ବୈଷ୍ଣବ ମତରେ ସ୍ୱକୀୟ ଅପେକ୍ଷା ପାରକୀୟ ଅଧିକ ମାଧୁର୍ଯ୍ୟ ପୂର୍ଣ୍ଣ ଓ ସର୍ବ ପ୍ରଧାନ । ଶ୍ରୀ ଚୈତନ୍ୟ ମୁକ୍ତିକୁ ଅଗ୍ରାହ୍ୟ କରି ଅଛନ୍ତି ।

ଶ୍ରୀ ଚୈତନ୍ୟଙ୍କ ଆଗମନ ଦ୍ୱାରା ଯେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରଚାର ହେଲା, ତାହା ନୁହେଁ । ତାହାର ବହୁତ ପୂର୍ବରୁ ଓଡିଶାରେ ବୈଷ୍ଣବ ଧର୍ମର ସତ୍ତା ରହିଅଛି । ଏହାର ଭୂରି ଭୂରି ପ୍ରମାଣ ଦେଖିବାକୁ ମିଳେ । ଖାରବେଳଙ୍କ ହାତୀ ଗୁମ୍ଫା ଶିଳା-ଲିପିରେ ଅଛି ଯେ, "ସେ ତାଙ୍କର ଶ୍ୟାମଭାସ୍ୱର ଅଙ୍ଗର

ସ୍ତୁତିନାରେ ଗଜପୁରୋତ୍ତମ ବହୁ କ୍ରୀଡ଼ା କରିଥିଲେ ।” ଏଥିରୁ ସେ ଯୁଗରେ ଓଡ଼ିଶାରେ କୃଷ୍ଣ ଉପାସନା ବା ବୈଷ୍ଣବ ଧର୍ମ ପ୍ରଚଳିତ ଥିବାର କେହି କେହି ଅନୁମାନ କରନ୍ତି । ନିଦ୍ଧବନ ମହାଦେବୀ ଦାନ ଫଳକରେ ନିଜକୁ ପରମାବୈଷ୍ଣବୀ କହିବା ସଙ୍ଗେ ସଙ୍ଗେ କାତ୍ୟାୟନୀଙ୍କ ସଙ୍ଗେ ତୁଳନା କରି ଅଛନ୍ତି । ଏହାଛଡ଼ା, ପୁରାଣ-ବର୍ଣ୍ଣିତ ବିଷୟମାନଙ୍କରୁ ଉତ୍କଳରେ ବିଷ୍ଣୁଙ୍କ ଆରାଧନା ଅତି ପ୍ରାଚୀନ କାଳରୁ ଥିବାର ଜଣାଯାଏ । ମହାଭାରତସ୍ଥ ବନପର୍ବରେ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନ, ବ୍ରହ୍ମପୁରାଣ, ବୃହତ୍ ନାରଦୀୟ ପୁରାଣ ପ୍ରଭୃତି ଏହାର ଦୃଷ୍ଟାନ୍ତ । ଏକାଦଶ ଶତାବ୍ଦୀରେ ଜୟଦେବଙ୍କ ‘ଗୀତଗୋବିନ୍ଦ’ ରଚିତ ହୋଇଥିଲା ଓ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରଚାର ନିମନ୍ତେ ଏ ଗ୍ରନ୍ଥ ଯଥେଷ୍ଟ ସାହାଯ୍ୟ କରିଅଛି । ତେବେ, ଏତିକି କୁହାଯାଇ ପାରେ ଯେ ଶ୍ରୀଚୈତନ୍ୟଙ୍କ ଆଗମନ ଦ୍ୱାରା ଓଡ଼ିଶାରେ ବୈଷ୍ଣବ ଧର୍ମର ବହୁଳ ପ୍ରସାର ଘଟିଥିଲା ।

ଜଗନ୍ନାଥ ଦାସ ଶ୍ରୀଚୈତନ୍ୟଙ୍କର ଶିଷ୍ୟ । ତେଣୁ, ଚୈତନ୍ୟ-ସାମ୍ପ୍ରଦାୟିକ ମତ ଜଗନ୍ନାଥଙ୍କର ଗ୍ରାହ୍ୟ । ତେବେ, ପଞ୍ଚସଖାଙ୍କ ସାହିତ୍ୟ ଆଲୋଚନା କଲେ ଦେଖିବା ଯେ ସେଥିରେ ଅଦ୍ୱୈତବାଦ ରହିଛି, ଶୂନ୍ୟ ନିରଞ୍ଜନର କଳ୍ପନା ରହିଛି, ପୁଣି ମନ୍ତ୍ର, ଯନ୍ତ୍ର ଓ ଯୋଗର ସୂଚନା ମଧ୍ୟ ରହିଛି । ଏଥିରୁ ଜଣାଯାଏ ଯେ ପଞ୍ଚସଖା ପୂର୍ବବର୍ତ୍ତୀ ମତବାଦଗୁଡ଼ିକୁ ସେ ନିଜର ନୂତନ ଭାବବ୍ୟଞ୍ଜନାରେ ପୁଷ୍ଟ କରିଅଛନ୍ତି । ପଞ୍ଚସଖା ତତ୍ତ୍ୱ ଓ ସାଧନା ନିରୂପଣରେ ଯେଉଁସବୁ ବିଚାର କରିଅଛନ୍ତି, ତାହା ପ୍ରଚଳିତ ଷଡ଼ଦର୍ଶନ ମଧ୍ୟରେ ପର୍ଯ୍ୟବସିତ । ପିଣ୍ଡ ଓ ବ୍ରହ୍ମାଣ୍ଡ, ସୃଷ୍ଟିତତ୍ତ୍ୱ,

ସଗୁଣ ଓ ନିର୍ଗୁଣ, ମନ୍ତ୍ରତନ୍ତ୍ର ଓ ଯୋଗ ପ୍ରଭୃତିର ପ୍ରଚାର ହେଉଛି ପଞ୍ଚସଖା ଧର୍ମର ବୈଶିଷ୍ଟ୍ୟ। ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତଙ୍କ ରଚନାରେ ଏହାରହିଁ ସୂଚନା ମିଳେ। ଜଗନ୍ନାଥ ଦାସ ଐଶ୍ୱର୍ଯ୍ୟଜ୍ଞାନ ମିଶ୍ରା ରତିର ଉପାସକ ଥିଲେ। ଭକ୍ତିର ତିନୋଟି ଅବସ୍ଥା। ଯଥା—ସାଧନାବସ୍ଥା, ଭାବାବସ୍ଥା ଓ ପ୍ରେମାବସ୍ଥା। ଶ୍ରବଣ କୀର୍ତ୍ତନ ଦ୍ୱାରା ପ୍ରଥମେ ସାଧନ ଭକ୍ତିର ଉଦ୍ରେକ ହୁଏ। ଶ୍ରବଣକୀର୍ତ୍ତନ ଦ୍ୱାରା ଅନର୍ଥ ଯେତେ ହ୍ରାସହୁଏ, ସେତେ ଶ୍ରଦ୍ଧାବୃତ୍ତି ଉଚ୍ଚଭାବ ଧାରଣକରି ନିଷ୍ଠା, ରୁଚି, ଆସକ୍ତି, ଭାବ ଓ ରତି ନାମରେ ପରିଚିତ ହୁଏ। କୃଷ୍ଣରତି ଦୁଇପ୍ରକାର। ଯଥା—ଐଶ୍ୱର୍ଯ୍ୟଜ୍ଞାନମିଶ୍ରା ଓ ଐଶ୍ୱର୍ଯ୍ୟଜ୍ଞାନଶୂନ୍ୟା ବା କେବଳା। ଜଗନ୍ନାଥ ଦାସ ଏହି ଐଶ୍ୱର୍ଯ୍ୟଜ୍ଞାନମିଶ୍ରାର ଉପାସକ ଥିଲେ।

୪। ଉପସଂହାର—

ଧର୍ମ ଓ ସାହିତ୍ୟର ସମ୍ପର୍କ ଅବିଚ୍ଛେଦ୍ୟ। ସାହିତ୍ୟ ହେଉଛି ଯୁଗାଶ୍ରୟୀ। ଯୁଗଧର୍ମର ସଙ୍କେତ ସାହିତ୍ୟରେ ଫୁଟିଉଠିବା ମଧ୍ୟ ସେହିପରି ଅବଶ୍ୟମ୍ଭାବୀ। ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚନା କଲେ ଆମେ ଏହି କଥା ଦେଖିବା। ଯୁଗେ ଯୁଗେ ଧର୍ମ ସାହିତ୍ୟକୁ ପରିପୁଷ୍ଟ କରିଛି, ସାହିତ୍ୟ ମଧ୍ୟ ଧର୍ମକୁ ରୂପରେଖ ଦେଇଛି। ଅଧିକନ୍ତୁ ଧର୍ମପାଇଁ ସାହିତ୍ୟ କଣ୍ଟକିତ ପଥରେ ଆଗେଇ ଚାଲିଛି। ଆଜି ଆଧୁନିକ ଓଡ଼ିଆ ସାହିତ୍ୟରେ ଯଦି ଗଦ୍ୟର ପ୍ରାଧାନ୍ୟ ସ୍ୱୀକାର କରାଯାଏ ତେବେ, ଏହାର ମୂଳରେ ରହିଛି ଧର୍ମର ପ୍ରେରଣା। ଊନବିଂଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ଗଦ୍ୟର ବିକାଶ ଆଦୌ ହୋଇନଥିଲା କହିଲେ ଚଳେ। ଖ୍ରୀଷ୍ଟିୟାନ ଧର୍ମପ୍ରଚାରକମାନଙ୍କର

ପ୍ରଥମ ପ୍ରଚେଷ୍ଟାରୁ ଗଦ୍ୟସାହିତ୍ୟ କ୍ରମଶଃ ବିକାଶ ପଥରେ ଆଗେଇ ଚାଲିଛି । ପଞ୍ଚସଖାଙ୍କ କ୍ଷେତ୍ରରେ ମଧ୍ୟ ସେହିକଥା । ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର ମନୋବୃତ୍ତି ନେଇ ଓଡ଼ିଆ ସାହିତ୍ୟକୁ ପଞ୍ଚସଖାଙ୍କର ଦାନ ଯେ କେତେ ଅଧିକ ତାହା ଯେ କୌଣସି ସାହିତ୍ୟସେବୀ ସହଜରେ ଜାଣିପାରିବେ । ଓଡ଼ିଆ ସାହିତ୍ୟ ଏହି ପଞ୍ଚସଖାଙ୍କ ଦାନଦ୍ୱାରା ପରିପୁଷ୍ଟ ଓ ପରିପୁଷ୍ଟ ହୋଇଛି । କେବଳ ସେତିକି ନୁହେଁ, ପାଶ୍ଚାତ୍ୟ ଶିକ୍ଷାଭିମାନୀ ପଥଭ୍ରଷ୍ଟ ହିନ୍ଦୁମାନଙ୍କୁ ସତ୍‌ପଥ ଓ ଆଦର୍ଶର ଧାରରେ ଗତି କରିବା ପାଇଁ ଜଗନ୍ନାଥ ଦାସଙ୍କର 'ଭାଗବତ' ସର୍ବଦା ସଚେତ କରିଦେଉଅଛି । ଓଡ଼ିଶାବାସୀ ସେହି ପରମସାଧକ ଅତିବଡ଼ ଗୋସ୍ୱାମୀଙ୍କୁ ଘରେ ଘରେ ପୂଜା କରୁଅଛନ୍ତି । ଜଗନ୍ନାଥ ଦାସ ହେଉଛନ୍ତି ଓଡ଼ିଆ ଜାତିର ଜୀମିତା, ଭଗବାନଙ୍କର ଅଂଶ ବିଶେଷ । ପଣ୍ଡିତ ସଦାଶିବ ମିଶ୍ରଙ୍କର ଭାଷାରେ କହିବାକୁ ଗଲେ,—"ସେତେବେଳେ ଯବନ ସିଙ୍ଗାହ୍ୱ ଉତ୍କଳର ପ୍ରାୟ ଚତୁର୍ଦ୍ଦିଗରେ ସନାତନ ଧର୍ମର ମୂଳ ଦେଶରେ କୁଠାରଘାତ କରୁଥିଲା । ଧର୍ମପ୍ରାଣ ହିନ୍ଦୁ ଭକ୍ତଗଣ କାତର କଣ୍ଠରେ "ଭୟାକର ରକ୍ଷାକର" ବୋଲି ଭଗବାନଙ୍କୁ ଡାକୁଥିଲେ । ବିଧର୍ମୀଙ୍କ ପ୍ରବଞ୍ଚନା, ପ୍ରବଞ୍ଚନା ଓ ପ୍ରତାଡ଼ନାରେ ପଡ଼ି ଅନେକେ ସ୍ୱଧର୍ମ ବିଶ୍ୱାସ ଐଶ୍ୱରିକ ଭକ୍ତି ଓ ଦେବଗୁରୁ ବ୍ରାହ୍ମଣ ଶ୍ରଦ୍ଧା ଭୁଲି କେବଳ ଇନ୍ଦ୍ରିୟ ଲାଳସା ଓ ଭୋଗବିଳାସ ଚରିତାର୍ଥ କରିବା ଉଦ୍ଦେଶ୍ୟରେ ପ୍ରବୃତ୍ତି ମାର୍ଗରେ ଧାବମାନ ହେଉଥିଲେ । କରୁଣାମୟ ଭଗବାନ ଏହି ଅସହ୍ୟ ଧର୍ମୋଚ୍ଛେଦ କାଳରେ ପାମର ଜୀବମାନଙ୍କ ଉଦ୍ଧାର ନିମନ୍ତେ ଅଂଶାବତାର କରିବାକୁ ବାଧ୍ୟ ହୋଇଥିଲେ । ସେତେବେଳେ ଉତ୍କଳର ଭଗବାନ ପଞ୍ଚ

ନବବିଗ୍ରହ ଧାରଣ କରିଥିଲେ, ସେ ସେହି ମହାତ୍ମା "ଅତିବଡ଼ ଜଗନ୍ନାଥ ଦାସ" (୧) । ଅତିବଡ଼ ଗୋସ୍ୱାମୀଙ୍କ ପ୍ରତି ଏହାହିଁ ସମସ୍ତଙ୍କର ଶେଷବାଣୀ ।



(୧) ଅତିବଡ଼ ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀ— ୨ୟ ଦୃଷ୍ଟ ।

# ବୃନ୍ଦାବତୀ ଦାସୀ

ଓଡ଼ିଶାରେ ନାରୀ ସମାଜର ବର୍ତ୍ତମାନ ଅବସ୍ଥାକୁ ଆଲୋଚନା କରି ଦେଖିଲେ କେହି କେବେ ଧରିନେଇ ପାରିବ ନାହିଁ ଯେ ୪୦୦ ବର୍ଷ ତଳେ ଆମ ଦେଶ ପାଣି ପବନରେ ବଢ଼ି ଜଣେ ଗାଉଁଲି ଓଡ଼ିଆଣୀ ବୈଷ୍ଣବ ଧର୍ମଶାସ୍ତ୍ରରେ ପଣ୍ଡିତା ଥିଲେ । ସେଇ ନାରୀଙ୍କ ନାମ ବୃନ୍ଦାବତୀ ଦାସୀ । ସେ କବିତା ଲେଖିଥିଲେ । କବିତାରେ ବୈଷ୍ଣବ ଧର୍ମର ଗୂଢ଼ତତ୍ତ୍ୱ ସରଳ ଭାଷାରେ ଲେଖି ସେ କୃତିତ୍ୱ ଅର୍ଜନ କରିଥିଲେ । ବୃନ୍ଦାବତୀ ଯେଉଁଭଳି ପାଣ୍ଡିତ୍ୟ ସେ ଯୁଗରେ ତାଙ୍କ ରଚନାରେ ଦେଖାଇଛନ୍ତି ତାହା ଏବେ ପଢ଼ିଲେ ଆଶ୍ଚର୍ଯ୍ୟ ଲାଗେ ।

ଶ୍ରୀ ଗୌରାଙ୍ଗ ମହାପ୍ରଭୁ ବା ଶ୍ରୀ ଚୈତନ୍ୟଦେବଙ୍କର ବଙ୍ଗଳାରୁ ଓଡ଼ିଶାକୁ ଆସିବା ଆମ ଓଡ଼ିଶା ଇତିହାସର ଗୋଟିଏ ସ୍ମରଣୀୟ ବିଷୟ କହିଲେ ବାହୁଲ୍ୟ ହେବ ନାହିଁ । ଚୈତନ୍ୟଦେବଙ୍କ ପ୍ରଚାରିତ ଈଶ୍ୱର ଭକ୍ତି, ନାମସଂକୀର୍ତ୍ତନ, ଧର୍ମର ଉଦାରତା ଓ ଅଥ

ଦେଶର ଧନୀ ଗରିବ, ରଜା ପ୍ରଜା, ଅସ୍ପୃଶ୍ୟ ବ୍ରାହ୍ମଣ ସବୁ ଶ୍ରେଣୀର ସବୁ ଜାତିର ଲୋକଙ୍କୁ ପ୍ରଭାବିତ ଓ ମୁଗ୍ଧ କରିଥିଲା । ସେହି କାଳରେ ଓଡ଼ିଆ ସମାଜରେ ଲୋକେ ଜାତି ଭେଦ ଭାବ ଭୁଲିଗଲେ । ମନରୁ ସଂକୀର୍ଣ୍ଣ ସମ୍ପ୍ରଦାୟ ଭାବ ଓ ଜାତିଆଣ ଗୋଷ୍ଠୀ ଭାବ ପାଶୋରି ଲୋକେ ମୁକ୍ତ ମନରେ ବିଚାର କରି ଚଳୁଥିଲେ ।

ସେ କାଳରେ ଶ୍ରୀ ଚୈତନ୍ୟଦେବଙ୍କ ବ୍ୟକ୍ତିତ୍ୱ ଓ ପ୍ରଚାରିତ ଧର୍ମ ପ୍ରଭାବରେ ବହୁ ସଂଖ୍ୟକ କବି ସାହିତ୍ୟକାର ଭଗବତ୍ ବିଷୟକ କାବ୍ୟ-କବିତା ଲେଖି ଯାଇ ଅଛନ୍ତି । ସେହି ଯୁଗରେ ଯେଉଁ କବିମାନେ ଓଡ଼ିଆ ଭାଷାରେ ଚଉତିଶା, କାବ୍ୟ, କବିତା, ପଦ୍ୟ ରଚନା କରିଥିଲେ, ଶହ ଶହ ବର୍ଷ ବିତିଯାଇଥିଲେ ମଧ୍ୟ ଏପର୍ଯ୍ୟନ୍ତ ସେ ସାହିତ୍ୟର ପ୍ରଭାବ ଏକାଳ ସାହିତ୍ୟ ଉପରେ ସ୍ପଷ୍ଟ ବିସ୍ତାର କରି ରହିଅଛି ।

ସପ୍ତଦଶ ଶତାବ୍ଦୀର କଥା । ଚୈତନ୍ୟଦେବଙ୍କ ଧର୍ମ ପ୍ରଭାବ ଓଡ଼ିଶାରେ ପୂର୍ଣ୍ଣ ଭାବରେ ଲୋକ ସମାଜ ଉପରେ ପଡ଼ିଥିଲା । ସେ କାଳ ଲୋକେ ଧର୍ମ ନୀତିକୁ ପାଳୁଥିଲେ । ସେ ସମୟରେ ଆମ ଓଡ଼ିଆ ଭାଗବତ ଲେଖା ହୋଇଥିଲା । ଜଗନ୍ନାଥ ଦାସ, ବଳରାମ ଦାସ, ଦିବାକର ଦାସ, ଅନନ୍ତ ଓ ଅଚ୍ୟୁତାନନ୍ଦ ଦାସ, ପ୍ରଭୃତି ବଡ଼ ବଡ଼ ପୁରାଣ ଲେଖକ, ସନ୍ଥ ଓ ଧର୍ମ ପ୍ରଚାରକ ଭକ୍ତମାନଙ୍କର ପରିଚୟ ଲୋକେ ପାଇଥିଲେ । ଉପରୋକ୍ତ ଧର୍ମୀଗ୍ରନ୍ଥ ଓ ଧର୍ମଗ୍ରନ୍ଥ ଲେଖକମାନଙ୍କ ହେତୁ ସେ ସମୟର ଓଡ଼ିଶାର ଲୋକେ ଧର୍ମ କର୍ମ ଓ ନୀତିକୁ ଜୀବନରେ ଖୁବ୍ ଗୌରବ ଦେଉଥିଲେ । ଯୋଗମାର୍ଗ, ଭକ୍ତିମାର୍ଗ, ଶୂନ୍ୟମାର୍ଗ ପ୍ରଭୃତି ସବୁ ଧର୍ମମାର୍ଗରେ ଲୋକଙ୍କ ପ୍ରବୃତ୍ତି ଥିଲା । ଆଜି କାଲି ଭଳି ଲୋକେ ଇଂରାଜୀ ପାଠ ପଢ଼ି ନ ଥିଲେ ।

ସଂସ୍କୃତ ଭାଷାର ପ୍ରଚଳନ ଥିଲା । ସରଳ ଓଡ଼ିଆ ଭାଷା ସାଧାରଣ ଲୋକେ ପଢ଼ିଥିଲେ ଓ ଧର୍ମାଚାର୍ଯ୍ୟମାନଙ୍କ ଗ୍ରନ୍ଥ ସବୁଶ୍ରେଣୀର ଲୋକେ ବୁଝି ପାରୁଥିଲେ । ଗାଁମାନଙ୍କରେ ଲୋକେ ଏକାଠି ସନ୍ଧ୍ୟା-ବେଳେ ରୁଣ୍ଡ ହୋଇ ଭାଗବତ ଶୁଣି ଆଲୋଚନା କରୁଥିଲେ । ପ୍ରଭୁ ଜଗନ୍ନାଥ ବଡ଼ଠାକୁର ରୂପେ ସବୁ ଶ୍ରେଣୀ ଲୋକଙ୍କ ପୂଜା ପାଉଥିଲେ । ସେ କାଳର ଅଧିକାଂଶ କବିଙ୍କ ଲେଖା ଏହି ଜଗନ୍ନାଥଙ୍କୁ ଧରି ତାଙ୍କ ମହିମା ବଖାଣ କରି ଲେଖା ହୋଇଥିଲା । ସେ ସବୁ ସାହିତ୍ୟରୁ ଓଡ଼ିଆ ଜାତିର ସଂସ୍କୃତି ଓ ମାନସିକ ବିକାଶର ପରିଚୟ ମିଳେ ।

ବୈଷ୍ଣବ ଧର୍ମ, ଚୈତନ୍ୟଦେବ ଓଡ଼ିଶାରେ ଅଠର ବର୍ଷ ବହୁ ପ୍ରଚାର କରିଥିଲେ । ଏହି ଧର୍ମ, ନୀଳାଚଳ ସବୁ ସ୍ତର ଲୋକଙ୍କ ମନକୁ ଏତେ ଘାରି ପାରିଥିଲା ଯେ ଓଡ଼ିଶା ରାଜା ଶ୍ରୀ ଗଜପତି ପ୍ରତାପରୁଦ୍ରଦେବ ଓ ବହୁ ଉଚ୍ଚ ପଦସ୍ଥ ରାଜକୀୟ ଲୋକେ, ବୀର ଯୋଦ୍ଧାମାନେ ଯୁଦ୍ଧକ୍ଷେତ୍ର ଓ ରାଜକାର୍ଯ୍ୟ ଛାଡ଼ିଦେଇ କୌପୁନୀ ପିନ୍ଧି ସଂସାର ବିରାଗୀ ହୋଇ ସନ୍ୟାସୀ ହୋଇ ଯାଇଥିଲେ । ରାୟରାମାନନ୍ଦ ଏହିକାଳ ଚୈତନ୍ୟ ଧର୍ମ ଓ ଚୈତନ୍ୟଙ୍କ ପ୍ରଭାବରୁ ରାଜ ସମ୍ମାନ ଓ ସଂସାର ଛାଡ଼ି ସନ୍ୟାସ ଗ୍ରହଣ କରି ଧର୍ମତତ୍ତ୍ୱ ପ୍ରଚାର କରିଥିଲେ ।

ଚୈତନ୍ୟ ମହାପ୍ରଭୁଙ୍କ ପ୍ରଚାରିତ ଧର୍ମ ଓଡ଼ିଶାରେ ଗୋଟିଏ ଧର୍ମ ବିପ୍ଳବ ଆଣିଥିଲା । ଚୈତନ୍ୟଙ୍କ ଆସିବା ଆଗରୁ ଓଡ଼ିଶାରେ ପୁରୁଣାପନ୍ଥୀ ସ୍ମାର୍ତ୍ତ ବ୍ରାହ୍ମଣ ଓ ପୁରୋହିତମାନେ ଚୈତନ୍ୟ ଧର୍ମ ପ୍ରତି ବିତୃଷ୍ଣ ଥିଲେ । କିଆଁ କର୍ମ ଛାଡ଼ି କେବଳ କୃଷ୍ଣ ନାମ ଜପ କୀର୍ତ୍ତନ ଓ ଭଗବାନଙ୍କୁ ଭକ୍ତି କରିବା, ସେବା କରିବା, ନିଜର ପ୍ରିୟ ବୋଲି ଭାବି ତାଙ୍କ ସହିତ ପ୍ରୀତି-ବନ୍ଧନକୁ ସମ୍ବଳ କରି ବାସେମଣିଷର

ଧର୍ମାଚରଣ ବ୍ୟାପାରରେ ଏ କଥା ସେମାନେ ଖଣ୍ଡନ କରୁ ନ ଥିଲେ ଓ ଏହା ଭଗବାନଙ୍କ ପୂଜାର ବୈଧତା ବିଧି ନୁହେଁ ବୋଲି କହୁଥିଲେ । ଜାତିଭେଦ ବିରୁଦ୍ଧରେ ଚୈତନ୍ୟ ପ୍ରଚାର କରି ଥିବାରୁ ସେମାନେ ସେଇ ଧର୍ମକୁ ଘୃଣା କରୁଥିଲେ । ଏହି ବୈଷ୍ଣବଧର୍ମାଚରଣ ମାର୍ଗ ଏତେ ସରଳ ଓ ସୁଗମ ଥିଲା ଯେ କେବଳ ପୁରୁଷ ନୁହଁନ୍ତି, ବହୁତ କୁଳବାଳା ମଧ୍ୟ ଏହି ଧର୍ମରେ ଅନୁରକ୍ତ ଦେଖାଇଥିଲେ ।

ଶ୍ରୀ ଚୈତନ୍ୟଙ୍କ ଅନ୍ତରଙ୍ଗ ଶିଷ୍ୟ କେତୋଟିଙ୍କ ମଧ୍ୟରୁ ଶିଖି ମହାନ୍ତିଙ୍କ ଭଉଣୀ ମାଧବୀ ଦାସୀ ଜଣେ ପ୍ରସିଦ୍ଧ ଶିଷ୍ୟା ଥିଲେ । ସେ ମଧ୍ୟ ସେ ଯୁଗର ବ୍ରଜବୋଲି ଭାଷାରେ ଭଗବତ୍ ଜଣାଣ ପ୍ରାର୍ଥନା ପ୍ରଭୃତି ଭାରତର ପ୍ରସିଦ୍ଧ ଭକ୍ତ ନାରୀ ମୀରାବାଈଙ୍କ ଭଜନ ଭଳି ଲେଖିଥିଲେ ।

ଅପର ବୃନ୍ଦାବତୀ ଦାସୀ ସଂସାରର ଗୃହ ପରିବାର ଜଞ୍ଜାଳ, ଏକାବେଳେକେ ପରିତ୍ୟାଗ କରି ନ ଥିଲେ ସୁଦ୍ଧା ସେ ଏକ ପ୍ରକାର ସଂସାର ଉଦାସୀନା ବୈଷ୍ଣବୀ ଥିଲେ । ସେ 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' ରଚନା କରିଥିଲେ । ସେହି ପୁସ୍ତକରୁ ଜଣାଯାଏ ଯେ ବୃନ୍ଦାବତୀ ଦାସୀ କରଣ କୁଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ସମ୍ବନ୍ଧରେ ସେ ନିଜେ ଯାହା ଲେଖିଛନ୍ତି ତାହା ନିମ୍ନରେ ଉଦ୍ଧୃତ ହେଲା ।

କରଣ କୁଳରେ ସମ୍ଭୂତ, ପତି ମୋ' ବିଷ୍ଣୁ ଭକତ ।

(୨ୟ ଅଙ୍କ)

ବୃନ୍ଦାବତୀ ଦାସୀ ଖୁବ୍ ଧନୀଘର ବୋହୂ ହୋଇଥିଲେ । ସମାଜରେ ତାଙ୍କର ପ୍ରତିପତ୍ତି ଥିଲା । କିନ୍ତୁ ସେ ମନରେ ସନ୍ୟାସିନୀ ଥିଲେ । ସେ ନିରାସକ୍ତ ଜୀବନ କଟାଉଥିଲେ । ଭଗବାନ୍ ଶ୍ରୀକୃଷ୍ଣଙ୍କ ଭକ୍ତି ତାଙ୍କର କାମନାର ବସ୍ତୁ ଥିଲା ।

ବୃନ୍ଦାବତୀ ଦାସୀ ଲେଖିଛନ୍ତି—

ଅଛନ୍ତି ମୋର ପୁଣ ନାଥ, ଆବର ଅନେକ ସମ୍ପତ୍ତି ।
ଗୃହ ମୋହର ମଲ୍ଲୀପତ୍ତା, ଯେହେକୁ ଦୁଇ କ୍ରୋଶ ଛଡ଼ା ।
ଥାଇଣ ଗୃହସ୍ଥ ଧର୍ମରେ, ସୁତ ସମ୍ପଦ ସମ୍ପତ୍ତିରେ ।
କୃଷ୍ଣ ଚରଣ ବିନୁ ଅନ, କ୍ଷଣେ ନ ରହେ ମୋର ମନ ।

ବୃନ୍ଦାବତୀ ଦାସୀ ତାଙ୍କର ଶ୍ୱଶୁର, ପୁଅ, ନାତି ପ୍ରଭୃତିଙ୍କର ଯେଉଁସବୁ ପରିଚୟ ତାଙ୍କ ଲେଖାରେ ଦେଇଛନ୍ତି ତହିଁରୁ ଜଣାଯାଏ ଯେ ସେ କେବଳ ଏକା ନୁହଁନ୍ତି ତାଙ୍କ ସ୍ୱାମୀଙ୍କ ବଂଶରେ ମଧ୍ୟ କୃଷ୍ଣ ଭକ୍ତିର ଉପାସନା ପୂର୍ବରୁ ରହିଥିଲା ଏବଂ ତାଙ୍କର ବଂଶ ବୈଷ୍ଣବ-ଧର୍ମାବଲମ୍ବୀ ଥିଲେ ।

ସେ ଲେଖିଛନ୍ତି—

ପ୍ରଭୁଙ୍କ ତାତ ଜଗନ୍ନାଥ, ଦାସ ନାମ ମହୀରେ ଖ୍ୟାତ ।
ଯେ କୃଷ୍ଣ ଯଶ ଗୁଣ ମାନ, ଗୀତେ କରିଛନ୍ତି ରଚନ ।
ପ୍ରଭୁ ଚନ୍ଦ୍ରଶେଖର ଦାସ, ମହୀରେ କଲେ ଯେ ପ୍ରକାଶ ।
ଶ୍ରୀକୃଷ୍ଣଚନ୍ଦ୍ର ଭକ୍ତ୍ୟୋଦୟ, ନାମେଣ ଗୀତ ସୁଧାମୟ ।
ପୁଣ ମୋହର ଭୀମ ଦାସ, ଯେ କୃଷ୍ଣ ପଦ ଭକ୍ତି ରସ ।
ଗୀତରେ କଲେକ ଉଦୟେ, ନାମେଣ ଭକ୍ତି ଚନ୍ଦ୍ରୋଦୟେ ।

× + ×

ନାତ ମୋହର କୃପାସିନ୍ଧୁ, ସେ ଭୀମ ଦାସ ନିଜ ବନ୍ଧୁ ।
ସେ ଉପାସନା ଚନ୍ଦ୍ରୋଦୟ, ନାମେ ଅଟନ୍ତି ସୁଧାମୟ ।

ବୃନ୍ଦାବତୀ ଦାସୀଙ୍କ ବଂଶରେ ସମସ୍ତେ ବୈଷ୍ଣବ ଭକ୍ତ ଥିଲେ । ତାଙ୍କ ଶ୍ୱଶୁର ଶ୍ରୀ ଜଗନ୍ନାଥ ଦାସ କୃଷ୍ଣ ଭକ୍ତି ବିଷୟକ ଗୀତ ରଚନା କରିଥିଲେ । ପୁଣି ବୃନ୍ଦାବତୀଙ୍କ ସ୍ୱାମୀ ଚନ୍ଦ୍ରଶେଖର ଦାସ ମଧ୍ୟ

ଶ୍ରୀ କୃଷ୍ଣଚନ୍ଦ୍ର ଚନ୍ଦ୍ରୋଦୟ ନାମକ ଭକ୍ତ କାବ୍ୟ ଲେଖିଥିଲେ । ତାଙ୍କ ପୁତ୍ର ଭୀମ ଦାସ ମଧ୍ୟ ଭକ୍ତ କବି ଥିଲେ ଓ ଭକ୍ତ ଚନ୍ଦ୍ରୋଦୟ ଗ୍ରନ୍ଥ ରଚନା କରିଥିଲେ । ତାଙ୍କର ନାତି କୃପାସିନ୍ଧୁ ଦାସ ଉପାସନା ଚନ୍ଦ୍ରୋଦୟ ଗ୍ରନ୍ଥ ରଚନା କରିଥିଲେ ।

ବୃନ୍ଦାବତୀଙ୍କ ପୁଅ ଭୀମ ଦାସ 'ଭକ୍ତ ରତ୍ନାବଳୀ' ବୋଲି ଗ୍ରନ୍ଥ ରଚନା କରିଥିଲେ । ଭୀମ ଦାସଙ୍କ ଗ୍ରନ୍ଥରୁ ଜଣାପଡେ, ପ୍ରକୃତରେ ସେମାନେ କରଣ ଥିଲେ ଓ ପୁରୀ ଜିଲ୍ଲାର ମଲିପଡ଼ା ତାଙ୍କର ଘର ଥିଲା ।

"କରଣ କୁଳେ ଉତପନ୍ନ, ଜାତ ସେ ବିଷ୍ଣୁ ଭକ୍ତ ଜନ ।"

(ବିଂଶ ଅଧ୍ୟାୟ)

ଏରୂପର ଭକ୍ତି ଓ ଉପାସନା ଧର୍ମର ପାରିପାର୍ଶ୍ୱିକ ପ୍ରଭାବରୁ ବୃନ୍ଦାବତୀ କିପରି ନିଜକୁ ଅଲଗା କରି ବଞ୍ଚାଇ ରଖି ପାରନ୍ତେ ? ଶ୍ୱଶୁର, ସ୍ୱାମୀ, ପୁଅ, ନାତି ସମସ୍ତଙ୍କର ହରିଭକ୍ତିର ପ୍ରଭାବ ବୃନ୍ଦାବତୀଙ୍କ ନାରୀ ସୁଲଭ କୋମଳ ମନକୁ ତରଳାଇବା ସ୍ୱାଭାବିକ ଥିଲା ।

ବୃନ୍ଦାବତୀଙ୍କ ଗ୍ରନ୍ଥ ରଚନାରେ ସେ ପ୍ରବୃତ୍ତ ଓ ଉତ୍ସାହ ଅଗ୍ରହ କିପରି ଜନ୍ମିଲା, ତାର କାରଣ ସମ୍ବନ୍ଧରେ ସେ ଲେଖିଛନ୍ତି—

"ଏ ଭାବେ ପତି ପୁତ୍ର ନାତି, ସମସ୍ତେ କୃଷ୍ଣ ପାଦେ ଭକ୍ତି
ହେତୁରେ କୃଷ୍ଣ କଥା ଗୀତେ, ରଚନା କରନ୍ତି ସମସ୍ତେ ।
ଏ ଦେଖି ମୁହିଁ ସେ ଶ୍ରଦ୍ଧାରେ, ଶ୍ରୀକୃଷ୍ଣ ଭକ୍ତି କାରଣରେ ।
ରଚନା କଲଇଁ ଏ ଗୀତ କୃଷ୍ଣ ଚରଣେ ଦେଇ ଚିତ୍ତ ।

(ବିଂଶ ଅଧ୍ୟାୟ)

ପଢ଼, ସୁର, ନାଭ ଯେ ଗ୍ରନ୍ଥ ରଚନା କରିବାର ପ୍ରେରଣା ଦେଇଛନ୍ତି ତାହା ସେ ନିଜେ ଲେଖିଛନ୍ତି । ସେହି ସାରିବାରଙ୍କ ପ୍ରଶ୍ନରୁ ବୃନ୍ଦାବତୀ 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' ଗ୍ରନ୍ଥ ଲେଖିଲେ । ଗ୍ରନ୍ଥ ରଚନାର ସମୟ ୧୬୨୧ ବା ୧୬୧୯ ସାଲ ଅଟେ । ତାହା ଭକ୍ତକବି ବୃନ୍ଦାବତୀଙ୍କ ପୂର୍ଣ୍ଣତମ ଚନ୍ଦ୍ରୋଦୟରେ ଲିଖିତ ଅଛି ।

"ଶକ ଅବଦ ଛଅ ଦଶ, ଶତ ଏକବିଂଶ ବରଷ
ଦିବ୍ୟସିଂହ ଦେବ ରାଜନ, ନିଦଶ ଅଙ୍କ ଏ ରଚନ ।"

ଓଡ଼ିଶା ରାଜା ଦିବ୍ୟସିଂହଦେବଙ୍କ ରାଜତ୍ୱ କାଳରେ ଏହି ଗ୍ରନ୍ଥ ଲେଖା ହୋଇଥିବାହେତୁ ବୃନ୍ଦାବତୀ ଦାସୀ ଓଡ଼ିଆ କବି ଲୋକନାଥ ବିଦ୍ୟାଧର, ଦିନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ, ଭୂପତିପଣ୍ଡିତ ପ୍ରଭୃତି କେତେକ ସୁନାମ ଧନ୍ୟ ପ୍ରସିଦ୍ଧ କବିମାନଙ୍କର ସମସାମୟିକ ଥିଲେ । ଅବଶ୍ୟ ଉପେନ୍ଦ୍ର ଭଞ୍ଜଙ୍କ ଭଳି ସାହିତ୍ୟ ମହାରଥିଙ୍କ ପ୍ରଭାବ ସେ ସମୟରେ ଅଧିକାଂଶ ଓଡ଼ିଆ କବି ଓ ଲେଖକମାନଙ୍କ ଉପରେ ବିଶେଷ ଭାବରେ ପଡ଼ିଥିଲା, ଏଥିରେ ସନ୍ଦେହ ନାହିଁ । ସେ ସମୟରେ ବହୁତ ଓଡ଼ିଆ ପ୍ରତିଭାଶାଳୀ ବୈଷ୍ଣବ କବିମାନଙ୍କର ପରିଚୟ ମିଳେ । ସେହି କବିମାନଙ୍କ ମଧ୍ୟରେ ଶ୍ରୀ ବୃନ୍ଦାବତୀ ଦାସୀ ଜଣେ ନାରୀ କବି ଭାବେ ପ୍ରସିଦ୍ଧି ଲାଭ କରିଥିଲେ ।

ଭକ୍ତମତି କବି ବୃନ୍ଦାବତୀ ଦାସୀ ତାଙ୍କ ରଚିତ ପୂର୍ଣ୍ଣତମ ଚନ୍ଦ୍ରୋଦୟ ଗ୍ରନ୍ଥଟିକୁ କୋଡ଼ିଏଟି କ୍ଷୁଦ୍ର ଅଧ୍ୟାୟରେ ବିଭକ୍ତ କରିଛନ୍ତି ।

ପ୍ରଥମ ଅଧ୍ୟାୟରେ କବି ବୃନ୍ଦାବତୀ ଶ୍ରୀଗୁରୁଙ୍କ ବନ୍ଦନା, ଦ୍ୱିତୀୟ ଅଧ୍ୟାୟରେ ଗ୍ରନ୍ଥର ପରିଚୟ, ତୃତୀୟରେ ପରମ ତତ୍ତ୍ୱର

ବର୍ଣ୍ଣନ, ପଞ୍ଚମରେ ଶ୍ରୀଅଙ୍ଗ ନିର୍ଣ୍ଣୟ ବର୍ଣ୍ଣନ, ଷଷ୍ଠରେ ଶ୍ରୀକୃଷ୍ଣଙ୍କ ଅଙ୍ଗ ପ୍ରତ୍ୟଙ୍ଗ କଥନ, ସପ୍ତମରେ ଲକ୍ଷଣ ଧ୍ୟାନ ବର୍ଣ୍ଣନ, ଅଷ୍ଟମରେ, ବ୍ରଜନନ୍ଦନ ବେଶଧ୍ୟାନ, ନବମରେ ଚରିତ୍ର ଧ୍ୟାନ ବର୍ଣ୍ଣନ, ଦଶମରେ ଧ୍ୟାନ ବିଧାନ ବର୍ଣ୍ଣନ, ଏକାଦଶରେ ସେବାଧ୍ୟାନ ବର୍ଣ୍ଣନ, ଦ୍ୱାଦଶରେ ନନ୍ଦନନ୍ଦନ ଗୁଣ ବର୍ଣ୍ଣନ, ତ୍ରୟୋଦଶରେ ଗୁଣଧ୍ୟାନ ବର୍ଣ୍ଣନ, ଚତୁର୍ଦ୍ଦଶ ଓ ପଞ୍ଚଦଶରେ ଗୁଣଧ୍ୟାନ ବର୍ଣ୍ଣନ, ଷୋଡ଼ଶ ସପ୍ତଦଶରେ ନିର୍ଦ୍ଦୋଷ ଧ୍ୟାନ ବର୍ଣ୍ଣନ, ଅଷ୍ଟାଦଶରେ ନିର୍ଦ୍ଦୋଷଧ୍ୟାନ ବିଧାନ, ଊନବିଂଶରେ ନିର୍ଦ୍ଦୋଷ ଧ୍ୟାନବର୍ଣ୍ଣନ ଓ ବିଂଶ ଅଧ୍ୟାୟରେ ସେ କେଉଁ ଗ୍ରନ୍ଥଗୁଡ଼ିକ ପାଠକରି ତାହାର ସାହାଯ୍ୟ ନେଇଛନ୍ତି ସେ କଥା ଲେଖିଛନ୍ତି ।

ଗ୍ରନ୍ଥର ନାମ ବୃନ୍ଦାବତୀ ଦାସୀ କିଂଣ ପାଇଁ ପୂର୍ଣ୍ଣତମ ଚନ୍ଦ୍ରୋଦୟ ରଖିଲେ, ସେ ସମ୍ବନ୍ଧରେ ଲେଖିଛନ୍ତି—

ଯେଣୁ ଶ୍ରୀକୃଷ୍ଣ ପୂର୍ଣ୍ଣତମ,     ସେ ଯେଣୁ ଶ୍ରୀକୃଷ୍ଣ ଉତ୍ତମ

ଶ୍ରୀକୃଷ୍ଣ ପୂର୍ଣ୍ଣ ଭଗବାନ୍ ପରମ ପୁରୁଷ ହୋଇଥିବାରୁ ସେ ଉତ୍ତମ ଅଟନ୍ତି । ବୈଷ୍ଣବ ଶାସ୍ତ୍ରକାରମାନେ ଲେଖିଛନ୍ତି ଯେ ଶ୍ରୀକୃଷ୍ଣଙ୍କର କୁଞ୍ଜଲୀଳା ସର୍ବୋତ୍କୃଷ୍ଟ ଅଟେ । ପୁଣି କୃଷ୍ଣ ସେଠାରେ ପୂର୍ଣ୍ଣତମ ଅଟନ୍ତି । ଦ୍ୱାରକାରେ ଶ୍ରୀକୃଷ୍ଣ ପୂର୍ଣ୍ଣତମ, ମଥୁରାରେ ପୂର୍ଣ୍ଣତର ଏବଂ ବ୍ରଜନଗର ବା ବୃନ୍ଦାବନରେ ପୂର୍ଣ୍ଣତମ । ବ୍ରଜଲୀଳା ମାଧୁର୍ଯ୍ୟମୟ ବୋଲି ବୈଷ୍ଣବ କବିମାନଙ୍କ ଲେଖନୀରେ ବିଖ୍ୟାତ ।

ବୃନ୍ଦାବତୀ ଦାସୀ ପରମା ବୈଷ୍ଣବୀ ଥିଲେ । ସେ ଲେଖିଛନ୍ତି ଶ୍ରୀ କୃଷ୍ଣଚନ୍ଦ୍ର କୈଶୋରର ଆଦ୍ୟ ଓ ମଧ୍ୟରେ ଅତି ରମଣୀୟ ଥିଲେ । ସେହି କିଶୋର କାଳରେ ସେ ବ୍ରଜର ମାଧୁର୍ଯ୍ୟ-

ମଯ୍ସୀ ଗୋପୀକାମାନଙ୍କ ସହିତ ଯମୁନାକୂଳରେ କଦମ୍ବ ମୂଳରେ ବିହାର କରୁଥିଲେ ।

ମହାଭାବ ସ୍ୱରୂପିଣୀ ଗୋପୀମାନେ ଏବଂ ଶ୍ରୀକୃଷ୍ଣଙ୍କର ଅହ୍ଲାଦିନୀ ଶକ୍ତି ସ୍ୱରୂପିଣୀ ଶ୍ରୀ ରାଧିକା ଅତି ସୁନ୍ଦରୀ ଥିଲେ । ସେ ମଧ୍ୟ ଅତି ରମଣୀୟ ଶ୍ରୀକୃଷ୍ଣଙ୍କ ସହିତ ଲୀଳା ବିହାର କରିଥିଲେ ।

ନାଭା କବିଙ୍କ ମତରେ ଭଗବାନଙ୍କୁ ଜୀବ ଯେତେପ୍ରକାର ଭକ୍ତି କରେ, ସେହି ଭକ୍ତି ମଧ୍ୟରୁ କାନ୍ତ-କାନ୍ତା ଭକ୍ତି ଭଗବାନଙ୍କ-ଠାରେ ନିବିଡ଼ ଅନୁରାଗର ଶ୍ରେଷ୍ଠତମ ଭାବ । ତେଣୁ ଶ୍ରୀରାଧା ଓ ଗୋପୀ ମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଭକ୍ତି ଅନ୍ୟାନ୍ୟ ପ୍ରକାର ଭକ୍ତି ମାର୍ଗଠାରୁ ଉତ୍କୃଷ୍ଟ ଓ ଶ୍ରେଷ୍ଠତମ ବୋଲି ବିବେଚିତ । ଶ୍ରୀକୃଷ୍ଣଙ୍କର ଶ୍ରୀରାଧାଙ୍କର ବ୍ରଜ ବିହାର, ମିଳନ, ବିରହ ପ୍ରଭୃତି ରାଗାନୁରାଗ ଭାବମୂଳକ ଭକ୍ତି ଏହି ହେତୁରୁ ଶ୍ରେଷ୍ଠ ବୋଲି ବୃନ୍ଦାବନୀ ଦାସୀଙ୍କର ମତ ।

ସେହି ମତାନୁବର୍ତ୍ତୀ ହୋଇ ନାଭା କବି ଗୋପର ଶ୍ରୀକୃଷ୍ଣଙ୍କୁ ଦୋଷଶୂନ୍ୟ, ମାଧୁର୍ଯ୍ୟମୟ ଓ ପୁର୍ଣ୍ଣତମ ଭାବରେ ଦେଖାଇ ଅଛନ୍ତି । ବ୍ରଜନାଗର ଶ୍ରୀକୃଷ୍ଣଙ୍କର ନାନା ଗୁଣ ବର୍ଣ୍ଣନା କରି ତାଙ୍କ ଗ୍ରନ୍ଥରେ ସନ୍ନିବେଶିତ କରିଛନ୍ତି । ତାହା ଏକାବେଳେକେ ମୌଳିକ ନହେଲେ ମଧ୍ୟ ନାଭା କବି ତାଙ୍କର ମତ ପ୍ରତିପାଦନ କରିବା ପାଇଁ ବହୁତ କଷ୍ଟ, ଅଧ୍ୟବସାୟ କରି ଗ୍ରନ୍ଥ ଲେଖିଛନ୍ତି, ଏଥିରେ ସନ୍ଦେହ ନାହିଁ ।

ପୂର୍ଣ୍ଣତମ ଚନ୍ଦ୍ରୋଦୟ ଗ୍ରନ୍ଥ ରଚନା ଲାଗି ନାଭାକବିଙ୍କୁ ବିଶାଳ ଦର୍ଶନ ଶାସ୍ତ୍ରମାନ ପଢ଼ିବାକୁ ହୋଇଥିଲା । ସେ ଲେଖିଛନ୍ତି

ଅଥର୍ବ ବେଦ, ନାରଦ ପୁରାଣ, ପଦ୍ମ ପୁରାଣ ପ୍ରଭୃତି ଅଷ୍ଟାଦଶ ପୁରାଣ, ବରାହ ସଂହିତା, ନାରଦ ପଞ୍ଚରାତ୍ର, ବୈଷ୍ଣବାମୃତ, ଶ୍ରୀମଦ୍‌ଭାଗବତ, ରାଧା ତାପିନୀ ସଂଖ୍ୟାତାରକା, ବ୍ରଦର୍ଷ ମାଧବ ପ୍ରଭୃତି ୨୬ଟି ବୃହତ୍ ଗ୍ରନ୍ଥମାନଙ୍କର ସାହାଯ୍ୟ, ସହାୟତା ନେଇଛନ୍ତି । ଉଲ୍ଲିଖିତ ଗ୍ରନ୍ଥମାନ ପଢ଼ି ତହିଁରୁ ସାର ସଂଗ୍ରହ କରି ନିଜର ଲକ୍ଷ୍ୟ ସାଧନ କରିବା ବା 'ଆଦର୍ଶ' ପ୍ରତିଷ୍ଠା କରିବା କିଛି ସାମାନ୍ୟ କଥା ନୁହେଁ ।

ଉପରୋକ୍ତ ଗ୍ରନ୍ଥମାନଙ୍କରେ ମୂଳ ସଂସ୍କୃତର ଲେଖା ପୁସ୍ତକ ରହିଛି । ପୁରାଣମାନ ସେ କାଳରେ ସବୁ ଓଡ଼ିଆ ଭାଷାରେ ଲେଖା ହୋଇ ନଥିଲା । ଜଗନ୍ନାଥ ଦାସଙ୍କ ଭାଗବତ, ରତ୍ନାକର ଦାସଙ୍କ ନୃସିଂହ ପୁରାଣ ଓ ବଳରାମ ଦାସଙ୍କ ରାମାୟଣ ଆଦି ସବୁ ତାଳପତ୍ର ପୋଥିରେ ଲେଖା ହୋଇଥିଲା ।

ନାରଦ ପଞ୍ଚରାତ୍ର, ବରାହ ସଂହିତା, ଅଥର୍ବ ବେଦ ଓ ଭାଗବତ ସଂସ୍କୃତ ଭାଷା ତଳେ ଲେଖା ଥିଲା । ଆମର ନାଭା କବିଙ୍କର କେବଳ ଓଡ଼ିଆ ନୁହେଁ; ସଂସ୍କୃତ ଭାଷାରେ ଖୁବ୍ ଦଖଲ ରହିଥିଲା । ସେହି କାରଣରୁ ସେ ବଡ଼ ବଡ଼ ଦର୍ଶନ, ଆଧ୍ୟାତ୍ମିକ ଗ୍ରନ୍ଥମାନ ପଢ଼ି ତହିଁରୁ ସାର ନେଇ ପୁସ୍ତକ ରଚନା କରିବାକୁ ସମର୍ଥ ହୋଇଥିଲେ ।

ବୈଷ୍ଣବ ଧର୍ମ ସମ୍ବନ୍ଧରେ ଗବେଷଣା କରି ଭକ୍ତକବି ବୃନ୍ଦାବତୀ ଯେଉଁ ପୁସ୍ତକମାନ ପଢ଼ିଥିଲେ ସେହି ପୁସ୍ତକମାନ ବୈଷ୍ଣବ ଧର୍ମର ଅତି ପ୍ରାମାଣ୍ୟ ଓ ମୂଲ୍ୟବାନ୍ ବୋଲି ମନେହୁଏ । ସେହି ଦୃଷ୍ଟିରୁ ନାଭା କବି ପୁସ୍ତକ ମାନଙ୍କର ସଦବ୍ୟବହାର କରି ତାଙ୍କର ଭାବ ଓ ମତକୁ ପ୍ରତିଷ୍ଠା କରି ପାରିଛନ୍ତି । ଶ୍ରେଷ୍ଠ ଗ୍ରନ୍ଥ-

ପ୍ରତିପାଦ୍ୟ ବିଷୟ କବିଙ୍କର କପୋଳ କଳ୍ପନା ବୋଲି କୁହାଯିବ ନାହିଁ ।

ଅନେକ ସମୟରେ ଅନେକ କ୍ଷେତ୍ରରେ ଦେଖାଯାଏ ଯେ ଉପଯୁକ୍ତ ଗୁରୁପାଇଲେ ମନୁଷ୍ୟମାନଙ୍କର ଜ୍ଞାନର ସୀମା ପରିଧି ବହୁତ ବଢ଼ିଯାଏ । ବୈଷ୍ଣବ ଧର୍ମର ନିଗୂଢ଼ ତତ୍ତ୍ୱ ଯେ ପୋଥି ପୁରାଣ ପଢ଼ି ବୁଝିବା ଦୁଷ୍କର, କେବଳ ଏତିକି ନୁହେଁ, ଅସାଧ୍ୟ କଥା ମଧ୍ୟ । ଚିନି ନ ଖାଇ ଚିନିର ସ୍ୱାଦ ଯେପରି ବର୍ଣ୍ଣନା କରିବା ଅସମ୍ଭବ, ଏହି ବୈଷ୍ଣବ ଧର୍ମତତ୍ତ୍ୱ ମଧ୍ୟ, ନାନାଦି ବହି ପଢ଼ି ବିନାଗୁରୁ ସାହାଯ୍ୟରେ ଲେଖିବା ସମ୍ଭବ ନୁହେଁ । ତେଣୁ ସେ କାଳରେ ସମସ୍ତେ ସଦ୍‌ଗୁରୁଙ୍କ ଠାରୁ ଦୀକ୍ଷା ନେଇ ବୈଷ୍ଣବ ତତ୍ତ୍ୱ ମାର୍ଗରେ ଭକ୍ତମାନେ ଓ ଭକ୍ତ କବିମାନେ ବଞ୍ଚୁଥିଲେ । ଏଥିରେ ସନ୍ଦେହ ନାହିଁ ।

କବି ବୃନ୍ଦାବତୀଙ୍କର ତୀକ୍ଷ୍ଣମେଧା ଥିଲା । ସେ ବୁଦ୍ଧି ବଳରେ ଗ୍ରନ୍ଥ ଲେଖି ପାରି ଥାଆନ୍ତେ । କିନ୍ତୁ ସେ ଗୁରୁଙ୍କ ନିର୍ଦ୍ଦେଶ ନିଜର ଅହଂ ବିନାଶ ପାଇଁ ଲୋଡ଼ିଲେ । ନିଜର ସାଧ୍ୟ ସାଧନା, ସହଜାତ ସଂସ୍କାର ସହିତ ଗୁରୁଙ୍କ ନିର୍ଦ୍ଦେଶ ରହିଲେ ଜ୍ଞାନଲାଭ ସହଜରେ ହୁଏ ବୋଲି ବୃନ୍ଦାବତୀ ଦାସୀ ଭାବିଲେ । ସେ ଯୁଗରେ ସୁଯୋଗ୍ୟ ଗୁରୁ ବହୁତ ବିରଳ ଥିଲେହେଁ ବୃନ୍ଦାବତୀ ଦାସୀ ଗୁରୁକୃପା ଉପରେ ନିର୍ଭର କରିଥିଲେ ।

ସେ ଗୁରୁ କୃପା ବଳରୁ ଗ୍ରନ୍ଥ ରଚନା କଲେ ବୋଲି ଗୁରୁଙ୍କୁ କୃତଜ୍ଞତା ଜଣାଇଛନ୍ତି । ତାଙ୍କର କୌଳିକ ଗୁରୁ ଥିଲେ ଶ୍ରୀ ଦୟାଳୁ ଦାସ । ବୃନ୍ଦାବତୀଙ୍କ ପୁଅ ପ୍ରେମଦାସ ମଧ୍ୟ ଦୟାଳୁ ଦାସଙ୍କଠାରୁ ନାମ ଦୀକ୍ଷା ଗ୍ରହଣ କରିଥିଲେ ।

ଦମ୍ବାଳୁ ଦାସ ପ୍ରସିଦ୍ଧ ଭକ୍ତବଂଶର କୁଳଗୁରୁ । ତାଙ୍କର ଅସ୍ଥାନ ବା ଆଶ୍ରମ ଥିଲା । ଗୁରୁ ବଂଶର ପରିଚୟ ଦେଇ ବୃନ୍ଦାବତୀ ଦାସୀଙ୍କର ପୁଅ ଭକ୍ତକବି ଭୀମ ଦାସ ତାଙ୍କର ଭକ୍ତ ରତ୍ନାବଳୀ ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ଲେଖିଛନ୍ତି—

"ଶଚୀଦେବୀଙ୍କ ଯେ ନନ୍ଦନ, ନାମ ଶ୍ରୀକୃଷ୍ଣ ଚଇତନ୍ୟ
ସେ ମହାପ୍ରଭୁଙ୍କର ଶିଷ୍ୟ, ନାମ ଶ୍ରୀ ଅଭିରାମ ଦାସ
ତାଙ୍କର ପଣନାତି ଶିଷ୍ୟ, ନାମଟି ଶ୍ରୀ ଦମ୍ବାଳୁ ଦାସ ।"

ଏଥିରୁ ଜଣାଯାଏ ଯେ ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କର ଶିଷ୍ୟ ବଂଶର ପରମ୍ପରାକ୍ରମେ ବୃନ୍ଦାବତୀ ଦାସୀଙ୍କ ଶ୍ୱଶୁର ବଂଶର କୁଳଗୁରୁ ଦମ୍ବାଳୁ ଦାସ । ଏହି କୁଳଗୁରୁଙ୍କ ମଠ ବା ଅସ୍ଥାନ ପୁରୁଷୋତ୍ତମ ବା ପୁରୀରେ ରହିଥିଲା ।

ବୋଧହୁଏ ଶ୍ରୀଗୁରୁଙ୍କ ଆଶୀର୍ବାଦରେ ବୃନ୍ଦାବତୀଙ୍କର ବଂଶଯାକ ବୈଷ୍ଣବ ଭାବ, ବୈଷ୍ଣବ ଓ ଧର୍ମ ସାଧନାରେ ଅନୁପ୍ରାଣିତ ହୋଇଥିଲେ ଏବଂ ବୃନ୍ଦାବତୀଙ୍କର ବଂଶ ପରମ୍ପରା କ୍ରମେ ମଧ୍ୟ ବୈଷ୍ଣବ ଧର୍ମ ଗ୍ରହଣ କରୁଥିଲେ ।

କବି ବୃନ୍ଦାବତୀ ତାଙ୍କ ଗ୍ରନ୍ଥରେ ବହୁ ତତ୍ତ୍ୱ ବହୁ ଗବେଷଣା କରି ଲେଖିଛନ୍ତି । ବୈଷ୍ଣବ ତତ୍ତ୍ୱ ସମ୍ବନ୍ଧରେ ଏହି ପୁସ୍ତକଟି ପ୍ରଣିଧାନ ଯୋଗ୍ୟ ।

ନାରୀ କବି ତାଙ୍କ ଗ୍ରନ୍ଥ ପ୍ରଥମ ଅଧ୍ୟାୟରେ ତାଙ୍କର ଗୁରୁଙ୍କୁ ବନ୍ଦନା କରିଛନ୍ତି । ତାଙ୍କର ଇଷ୍ଟ ଦେବତା ଶ୍ରୀକୃଷ୍ଣଙ୍କୁ ମଧ୍ୟ ଦମ୍ପିନୀ କରି ପ୍ରାର୍ଥନା ଜଣାଇଛନ୍ତି ।

ବୈଷ୍ଣବମାନେ ନିଜକୁ ଭଗବାନଙ୍କର ସେବକ ସେବିକା ଓ ତାଙ୍କର ନିତ୍ୟ ଦାସ ବୋଲି ଭାବନ୍ତି । ସେହି ଭାବ ପ୍ରତିଷ୍ଠା ପାଇଁ

ବୈଷ୍ଣବର ଅନ୍ତର, ବାହ୍ୟର, ସଂଯମ, ନିୟମ ଓ ସାଧ୍ୟ ସାଧନ । ବୃନ୍ଦାବତୀ ଏହି ଗ୍ରନ୍ଥରେ ନିଜକୁ ଗଠନ କରି "ତୃଣାଦପି ସୁନୀଚ" ବୋଲି ନିଜକୁ କଣ୍ଟକର ଭାବିଛନ୍ତି । ଏତେବଡ଼ ପଣ୍ଡିତା, ବିଦୁଷୀ, ଶାସ୍ତ୍ରଜ୍ଞାନ ଦର୍ଶିନୀ ନାରୀ ନିଜକୁ କ୍ଷୁଦ୍ରାଦପି କ୍ଷୁଦ୍ର, ତୃଣଠୁଁ ହୀନ ଭାବି ଅହଂକାର ଛାଡ଼ି ତାଙ୍କ ଗ୍ରନ୍ଥରେ ପାଠକ ପାଠିକାମାନଙ୍କୁ ନିବେଦନ କରି ଲେଖିଛନ୍ତି ଯେ ପାଠକମାନେ ତାଙ୍କର ଲେଖାର ଦୋଷ ଧରିବେ ନାହିଁ । ଏହା କେତେ ବଡ଼ ଗୁଣବତୀ ନାରୀର ପରିଚୟ ତାହା କହିବା ଅମ୍ଭମାନଙ୍କ ପକ୍ଷରେ ସମ୍ଭବ ନୁହେଁ ।

ପୁଣି ନାରୀ କବି, ଯଦିବା ପାଠକ ପାଠିକାମାନେ ତାଙ୍କ କବିତାର ଦୋଷ ଧରିବାକୁ ଯିବେ, ତେବେ ସବୁତକ ପୁସ୍ତକ ପାଠ କରି ସାରିଲା ପରେ ଦୋଷ ଧରିବାକୁ ଲେଖିଛନ୍ତି । ପାଠକ ପାଠିକାମାନଙ୍କୁ ସେ ତାଙ୍କ ଗ୍ରନ୍ଥପ୍ରତି କୃପାଚକ୍ଷୁ ପକାଇବାକୁ ମଧ୍ୟ କବିତାରେ ଅବେଦନ କରିଛନ୍ତି ।

ବୃନ୍ଦାବତୀଙ୍କ ଲିଖିତ ଗ୍ରନ୍ଥର ଦ୍ୱିତୀୟ ଅଧ୍ୟାୟର ଗ୍ରନ୍ଥ ସଙ୍ଗତରେ ସେ ତାଙ୍କ ବଂଶ ବିବୃତ ଦେଇ ଇଷ୍ଟ ବନ୍ଦନା କରିଛନ୍ତି । ତାଙ୍କ ମନରେ ଯେଉଁ ପ୍ରଶ୍ନ ଗୁଡ଼ିକ ଉଠିଛି ସେ ତାହାର ସମାଧାନ ନିମନ୍ତେ ତାଙ୍କ ସ୍ୱାମୀଙ୍କୁ ପଚାରିଛନ୍ତି । ସ୍ୱାମୀଙ୍କର ଉତ୍ତର ପାଇ ସେ କବିତାରେ ସେହି କଥା ବିବୃତ କରିଛନ୍ତି । ଏହା ଗୋଟିଏ ଅତି ବଡ଼ କଥା ।

ଏ ଯୁଗରେ ଜଣକର ଲେଖାର ଛାଁଚ ବା ଲେଖା ଚୋରି କରି ଅନ୍ୟ ଜଣେ ଅବଲୀଳା କ୍ରମେ ନିଜ ନାଁରେ ଛାପି ଦେଉଛନ୍ତି । ଶିକ୍ଷାଦାତା ବା ଶିକ୍ଷା ଦୀକ୍ଷା ଦାତାମାନଙ୍କ ଠାରୁ ବିଦ୍ୟା, ବୁଦ୍ଧି ହାସଲ କରି ଲେଖକ ଲେଖିକାମାନେ ଅବଲୀଳା କ୍ରମେ କୃତଘ୍ନତାର ଚରମ ସୀମା ଅତିକ୍ରମ କରି ଯାଉଛନ୍ତି ।

ଅହଂକାର, ଦମ୍ଭ, ଗର୍ବ, ଅମ୍ଭାଭିମାନ ଏତେ ବେଶି ଉତ୍କଟ ହୋଇ ଉଠିଛି ଯେ ସମସ୍ତେ ନିଜକୁ ସବୁ କ୍ଷେତ୍ରରେ ପ୍ରଧାନ ଭାବୁଛନ୍ତି । ଗୁରୁଙ୍କୁ ଅସ୍ୱୀକାର କରି କୃତଘ୍ନ ହେବା ଓ ଗୁରୁଜନ, ଉପକାରୀ ଜନକୁ ଅମ୍ଭସ୍ତୁରତା ଓ ଅହମିକା ବଶରୁ ବୃଦ୍ଧାଙ୍ଗୁଷ୍ଠ ଦେଖାଇବା ବର୍ତ୍ତମାନ ସମାଜର ବିଶିଷ୍ଟ ପନ୍ଥା ଓ ସଂସ୍କୃତି ସଭ୍ୟତାର ବଡ଼ ଅଙ୍ଗ ବୋଲି ଶିକ୍ଷିତା ନାରୀମାନେ ଭାବୁଛନ୍ତି । ବିନତି ଯେଉଁ ଚରିତ୍ରକୁ ଅଳଂକାର ଦିଏ, କୃତଘ୍ନତା ଓ ଗୁରୁ ବା ଶିକ୍ଷାଦାତାଙ୍କୁ ଅସ୍ୱୀକାର କରିବାର ଦମ୍ଭ ସେହି ଚରିତ୍ରକୁ ଅସୁନ୍ଦର ଓ ଅସଂସ୍କୃତ କରିଦିଏ । ଇତିହାସ ଏହି ଚରିତ୍ରର ନରନାରୀଙ୍କୁ କଦାପି ମୂଲ୍ୟ ଦିଏନାହିଁ । ଅପାତ ରମଣୀୟ ଗର୍ବ ଅଭିମାନ ଓ ଅହମିକାର ମୂଲ୍ୟ ମଧ୍ୟ ସାମାଜିକ ନାରୀ ଜୀବନରେ ନଗଣ୍ୟ ଅଟେ ।

ବୃନ୍ଦାବତୀ ଦାସୀ ତାଙ୍କ ଗ୍ରନ୍ଥ ସଙ୍ଗତରେ ପ୍ରଥମରେ ତତ୍ତ୍ୱ ବିସ୍ତର, ଦ୍ୱିତୀୟରେ ଅବରଣ, ତୃତୀୟରେ ଅଙ୍ଗ ପ୍ରମାଣ, ଚତୁର୍ଥରେ ପ୍ରତି ଅଙ୍ଗ, ପଞ୍ଚମରେ ଧ୍ୟାନ ଲକ୍ଷଣ, ଷଷ୍ଠରେ ସୁବେଶ-ଧ୍ୟାନ, ସପ୍ତମରେ ଚରିତ ଧ୍ୟାନ, ନବମରେ ସେବା ଧ୍ୟାନ କଥା ଲେଖିଛନ୍ତି । ଏପରି ଭାବରେ ଦ୍ୱିତୀୟ ଅଧ୍ୟାୟ ଶେଷ ହୋଇଛି ।

ତୃତୀୟ ଅଧ୍ୟାୟରେ ନାରୀ କବି ସୃଷ୍ଟି ତତ୍ତ୍ୱ, ପରମ ତତ୍ତ୍ୱ ପଞ୍ଚବିଂଶ ତତ୍ତ୍ୱାଦିର ଗୁହ୍ୟ ତଥ୍ୟ ଗୂଢ଼ତର ମହତ୍ତ୍ୱମର୍ମ-ବ୍ୟାଖ୍ୟା ଅତି ସରଳ ସର୍ବବୋଧ୍ୟ ଭାଷାରେ ଲେଖିଛନ୍ତି । ସେ ବିଷୟରେ କପରି ବୈରାଗ୍ୟ ଲାଭ କରିଛନ୍ତି ତାହାର ତୁଳନା ସେହି ଅଟନ୍ତି । ସେ ବୈଷ୍ଣବ ଧର୍ମ ଶାସ୍ତ୍ରର ଅତି ନିପୁଣଗ୍ରାହିକା ଥିଲେ ।

ଏହି ଅଧ୍ୟାୟରେ ଦେବତାଙ୍କ ବୟସ, ଜନ୍ମ ଲୀଳା, ଗୋପ, ମଥୁରା, ଦ୍ୱାରକା ଓ ରାସଲୀଳା ବର୍ଣ୍ଣିତ ଅଛି । ଶ୍ରୀକୃଷ୍ଣ

ବୃନ୍ଦାବନେଶ୍ୱର ସେ ସ୍ୱୟଂ ଭଗବାନ, ଏହା ତାଙ୍କର ସୁନ୍ଦର ଅନନୁକରଣୀୟ ଭାଷା ଦ୍ୱାରା ସେ ପ୍ରମାଣିତ କରିଛନ୍ତି ।

ଚତୁର୍ଥ ଅଧ୍ୟାୟରେ ସେ ସପ୍ତାବରଣ ମଧ୍ୟରେ ବୃନ୍ଦାବନ ନବୀନ କିଶୋର ନଟବର ବେଶରେ, ତ୍ରିଭଙ୍ଗ ଛନ୍ଦରେ, କଦମ୍ବ ପାଦପ ମୂଳରେ ମଣିବେଦୀର ମଧ୍ୟଦେଶରେ ବସିଛନ୍ତି । ଅଧରରେ ବଂଶୀ ଶୋଭମାନ । ଦେବଗଣ, ଗୋପୀଗଣ, ଧେନୁଗଣ, ସୁରଗଣ, ଋଷିଗଣ, କିନ୍ନରଗଣ, ଅପ୍‌ସରାଗଣ, ସିଦ୍ଧଗଣ, ସେ ସର୍ବୋଚ୍ଚ ଆବରଣ ମଧ୍ୟରେ ଶ୍ରୀକୃଷ୍ଣଙ୍କ ପରେ ନେତ୍ର ରଖି, ଶିର ଉପରେ କର ଯୋଡ଼ି ସ୍ତବ ସ୍ତୋତ୍ରମାନ ପାଠ କରୁଛନ୍ତି ।

ପଞ୍ଚମ ଷଷ୍ଠ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କ ଅଙ୍ଗ ପ୍ରତ୍ୟଙ୍ଗ ବର୍ଣ୍ଣନା ହୋଇଛି । ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ପୌରାଣିକ ତନ୍ତ୍ର ଅନୁସାରେ ବର୍ଣ୍ଣିତ ଓ ଲିଖିତ ହୋଇଛି ।

କବି ଲେଖିଛନ୍ତି ଯେଉଁମାନେ ଶ୍ରୀକୃଷ୍ଣ ପ୍ରତିମା ଗଠନ କରିବାକୁ ଯାଆନ୍ତି, ସେମାନେ ଠିକ୍ ମାପ ଅନୁଯାୟୀ ନ କଲେ ସେମାନେ ଯାଇ ପ୍ରେତଲୋକରେ ନରକରେ ପଡ଼ି ରହନ୍ତି । ଶ୍ରୀକୃଷ୍ଣଙ୍କ ବର୍ଣ୍ଣନା କବି ବଡ଼ ଚମତ୍କାର ଭାବରେ କରିଛନ୍ତି । କୃଷ୍ଣଙ୍କ ସମ୍ମୋହନ ମୂର୍ତ୍ତି ଦେଖି କବି ଲେଖିଛନ୍ତି ଏହି ମୂର୍ତ୍ତିରେ ସ୍ତ୍ରୀ ପୁରୁଷ ସମସ୍ତେ ମୋହିତ ହେବେ ।

ସପ୍ତମ ଅଧ୍ୟାୟରେ କବି ରୂପଗୋସ୍ୱାମୀଙ୍କ ଭକ୍ତି-ରସାମୃତରେ ଲିଖିତ ହୋଇଥିବା ଚରଣ, ହକାର, ଅକାର ମଧ୍ୟ ବର୍ଣ୍ଣନା କରିଛନ୍ତି ।

ଅଷ୍ଟମ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କର ଗୋପାଳ ନଟବର ବେଶ, ଅଥର୍ବ ବେଦ ଅନ୍ତର୍ଗତ ରାଧା ତାପିନୀ, ଭାଗବତ, ପଦ୍ମପୁରାଣ, ସ୍କନ୍ଦପୁରାଣ, ନାରଦ ପଞ୍ଚରାତ୍ର, ବ୍ରହ୍ମାଣ୍ଡ ପୁରାଣ, ବାୟୁ ପୁରାଣ

କିଶୋରାଷ୍ଟକ ପ୍ରଭୃତି ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ଅଛି, ଶ୍ରୀବୃନ୍ଦାବନର ସପ୍ତାବରଣ ମଧ୍ୟରେ ସନ୍ତାନ ପାଦପ ମୂଳରେ ମଣି ନିର୍ମିତ ବେଦୀ ଉପରେ କୃଷ୍ଣ ତ୍ରିଭଙ୍ଗ ଛନ୍ଦରେ ଠିଆ ହୋଇ ବଂଶୀ ନାଦ କରୁଛନ୍ତି । ତାଙ୍କ ବଂଶୀ ନାଦ ଅଙ୍ଗଶୋଭା ଅଷ୍ଟମ ଓ ନବମ ଅଧ୍ୟାୟରେ ବର୍ଣ୍ଣନା ହୋଇଛି ।

କବି ଲେଖିଛନ୍ତି—

ଯେ ଲୀଳା କଲ୍ଲୋଳ ବାରିଧି, ତାହା ବର୍ଣ୍ଣିବା କାହାବୁଦ୍ଧି ।
ମୁଁ ତ ସ୍ୱଭାବେ ନାରୀ ଜନ, ଧୈର୍ଯ୍ୟ ବିବେଧି ମତିଛନ୍ନ ।
ମହତ ଚରିତ କୃଷ୍ଣର, ସାର୍ଥିକ ହୋଇଲା ମୋହର ।
ତ୍ରିମୂର୍ତ୍ତ କହିବ ବିସ୍ତର, ଏତ ଅଟଇ କୁଳନାରୀ ।
କୁଳନାରୀଙ୍କ ଏ ଲକ୍ଷଣ, ପର ପୁରୁଷ ରୂପ ଗୁଣ ।
କହିବା ନୁହଇ ସୁନ୍ଦର, ଏ କୁଳ ନାରୀଙ୍କ ବେଭାର ।
ସୁନ୍ଦରେ ଗଣିବା ଯୁକତେ, କହୁଛି ତୁମ୍ଭର ଅଗ୍ରତେ ।
ସେ ମୋର ନୁହଁନ୍ତି ସେ ପର, ପତିଙ୍କ ସଖା ପ୍ରଭୁ ମୋର ।
ସେ ଯେମ୍ନ ପତିଙ୍କ ସମାନେ, ଧ୍ୟାନ କରଇ ତାଙ୍କୁ ମନେ ।
ତେଜି କୁଟୁମ୍ବ ବନ୍ଧୁଗଣ, ଗୃହ ସମ୍ପତ୍ତି ଧନଜନ, ।
ଭଜିଲି ଚରଣେ ତାଙ୍କର ବନ୍ଦଙ୍କୁ ଦେଖିଣ ସୁନ୍ଦର ।

ମୀରା ବାଈଙ୍କ ଭକ୍ତି ଗିରିଧର ଲାଲ୍‌ଙ୍କ ଉପରେ ପଡ଼ିଥିଲା । ସେ ଇଷ୍ଟ ଦେବତାଙ୍କୁ ସ୍ୱାମୀ ମଣି ତାଙ୍କର ବାସ୍ତବ ସ୍ୱାମୀ ତ୍ୟାଗ କରି ଆସି ସନ୍ନ୍ୟାସିନୀ ହୋଇଥିଲେ । ମାତ୍ର ଆମ ଭକ୍ତକବି ବୃନ୍ଦାବତୀ ସେହି ରାଗାନୁଗା ଭାବର ସାଧିକା । ତାଙ୍କ ପତିଙ୍କର ଶ୍ରୀକୃଷ୍ଣଙ୍କ ସହିତ ସଖାଭାବ ଥିବାରୁ କୁଳନାରୀ ହୋଇ ଶ୍ରୀକୃଷ୍ଣଙ୍କୁ ମଧ୍ୟ ପତି ଭାବରେ ସେ ଧ୍ୟାନ କରି ଅନ୍ୟାୟ କରି ନାହାନ୍ତି ବୋଲି

ଲେଖିଛନ୍ତି । ବୃନ୍ଦାବତୀ କୁଳନାରୀର ବରୁଢାଚରଣ କରିନାହାନ୍ତି । ପତି ଓ ଶ୍ରୀକୃଷ୍ଣଙ୍କୁ ଏକ ଭାବରେ ଦେଖିଛନ୍ତି ।

ଏହାର ସୂକ୍ଷ୍ମ ବିଶ୍ଳେଷଣ ବଡ଼ ମହତ୍ତ୍ୱମୟ । ନାରୀ ଶ୍ରୀକୃଷ୍ଣଙ୍କୁ ବା ଭଗବାନଙ୍କୁ କପରି ଭାବିବା ଉଚିତ ଓ ଭକ୍ତି କରିବା ଉଚିତ, ମୀରାଁ ବାଈଙ୍କ ଭଳି ବୃନ୍ଦାବତୀ ମଧ୍ୟ ତାର ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଖାଇଛନ୍ତି ।

ଦଶମ ଏବଂ ଏକାଦଶ ଅଧ୍ୟାୟରେ ଦାସ୍ୟ, ସଖ୍ୟ, ମଧୁର, ବାତ୍ସଲ୍ୟ, ଶାନ୍ତ ପଞ୍ଚଧା ଭକ୍ତି କଥା ସେ ଲେଖିଛନ୍ତି । ମଧୁର ଭକ୍ତିରେ ଗୋପୀମାନେ ଭଗବାନଙ୍କୁ କପରି ଉପାସନା କରିଥିଲେ ତାହାର ଲକ୍ଷଣ ଖୁବ୍ ସୁନ୍ଦର ଭାବରେ କବି ଲେଖିଛନ୍ତି ।

ବୃନ୍ଦାବତୀ ଦାସୀ ଶ୍ରୀକୃଷ୍ଣଙ୍କ ରୂପଗୁଣରେ ମୁଗ୍‌ଧା ଗୋପାଙ୍ଗନା ମାନଙ୍କ ଭଳି ତାଙ୍କୁ ପତି ସ୍ଥାନରେ ବରଣ କରିବାକୁ କୁଣ୍ଠା ଓ ଲଜ୍ଜାନୁଭବ ନକରି ତାହାଙ୍କର ଐକାନ୍ତିକ ଆତ୍ମ ସମର୍ପଣ କଥା ଯେପରି ଭାବରେ ଲେଖିଛନ୍ତି, ଓଡ଼ିଶାର କୌଣସି ନାରୀ ଭକ୍ତଙ୍କର ଲେଖାରେ ତାହା ପରିଲକ୍ଷିତ ହୁଏ ନାହିଁ ।

କବି ଶ୍ରୀକୃଷ୍ଣଙ୍କର ସଖା ଗୋପବାଳକ ଶ୍ରୀଦାମ ସୁଦାମଙ୍କର ପ୍ରୀତି-ଭକ୍ତିକୁ ସଖ୍ୟ, ଯଶୋଦା ରୋହିଣୀ ଓ ବୃଦ୍ଧା ଯାଦବ ନାରୀ ମାନଙ୍କ ପ୍ରୀତିକୁ ବାତ୍ସଲ୍ୟ ରସ ଭାବରେ ବର୍ଣ୍ଣିଛନ୍ତି । ଦାସ୍ୟ ଭକ୍ତି ଓ ଶାନ୍ତ ଭକ୍ତି ମଧ୍ୟ ତାହାକୁ କହନ୍ତି ରୂପକ ଦେଇ କବି ବର୍ଣ୍ଣନା କରିଛନ୍ତି ।

ଦ୍ୱାଦଶ, ତ୍ରୟୋଦଶ, ଚତୁର୍ଦ୍ଦଶ ପଞ୍ଚଦଶ ପ୍ରଭୃତି ଅଧ୍ୟାୟ ମାନଙ୍କରେ ଶ୍ରୀକୃଷ୍ଣଙ୍କର ଚଉଷଠି କଳାର ଗୁଣମାନଙ୍କର ବିଶଦ ବର୍ଣ୍ଣନା କରିସାରି ପୂର୍ଣ୍ଣବ୍ରହ୍ମରୂପେ ତାଙ୍କୁ ପ୍ରତିପାଦନ କରି ହୋଇଅଛି । ଷୋଡ଼ଶ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କର ଅଷ୍ଟାଦଶ ଦୋଷ

ବର୍ଜିତ ନିଷ୍କଳଙ୍କ ଚରିତ ବର୍ଣ୍ଣିତ ହୋଇଛି । ବ୍ରଜନନ୍ଦନ ଶ୍ରୀକୃଷ୍ଣ କୋଟି ବ୍ରହ୍ମାଣ୍ଡନାଥ ନିର୍ଗୁଣାତୀତ ଅଟନ୍ତି । ସେ ସକଳ କର୍ମ ସମ୍ପାଦନ କରି ମଧ୍ୟ କର୍ମ ବନ୍ଧନ ମୁକ୍ତ ଥିବାରୁ ତାଙ୍କୁ ପୁତନା ଅସୁର ବଧ ମାଲୁଣୀ ହରଣ, ମାତୁଳ ଓ ସ୍ୱଜନବଧ, ଷଣ୍ଡା ଯାମଳାର୍ଜ୍ଜୁନ ଅସୁର ବଧ, କାଳୀୟ ଦଳନ, ବସ୍ତ୍ର ଚୋରି ଦୋଷ, ଗୋପାଙ୍ଗନା ବିହାର ଦୋଷମାନ ଲଗି ପାରେନାହିଁ । ବିଶେଷତଃ ନାଗ୍ର କବିଙ୍କ ମତରେ—

"ସଂସର୍ଗ ଶ୍ରୀକୃଷ୍ଣର ଦେହେ, ଉତ୍କୃଷ୍ଟ ହୋଇଲେ ସର୍ବେ ।
ଦୋଷ ନିର୍ଦ୍ଦୋଷ ସହି ହୋଇ, ତାହାକୁ ଦୋଷ କେହୁ କହି ।
ଏଣୁ ନିର୍ଦ୍ଦୋଷ ଭଗବାନ ଅଟନ୍ତି ବ୍ରଜେନ୍ଦ୍ର ନନ୍ଦନ ।
(୧୮ ଅଧ୍ୟାୟ)

ଉନବିଂଶ ଅଧ୍ୟାୟରେ କବି କୃଷ୍ଣଙ୍କର ଦୋଷ ଗୁଣର ମର୍ଯ୍ୟାଦା ବର୍ଣ୍ଣନ କରିଛନ୍ତି । ଶ୍ରୀକୃଷ୍ଣଙ୍କ ଦୋଷକୁ ସୁଦ୍ଧା କବି ନିର୍ଦ୍ଦୋଷ କରି ଲେଖିଛନ୍ତି—

ଜ୍ଞାନୀ ପଣ୍ଡିତ ଭକ୍ତଜନ, ଶ୍ରୀକୃଷ୍ଣ ଦୋଷ ଲୀଳା ମାନ ।
ଶ୍ରୀକୃଷ୍ଣ ଲୀଳା ବୋଲି କରି, ଶୁଣି ଭବରୁ ଯିବେ ତରି ।
ଅଜ୍ଞାନୀ ରହସ୍ୟ ଶୁଣିବେ, ଭବ ବନ୍ଧରୁ ଛାଡ଼ିଯିବେ ।
କାମୁକେ ରତିଚରିତ୍ର ମାନ, ଶୁଣି ହୋଇବେ ହୃଷ୍ଟ ମନ ।
ଆପଣା ଉପଦେଶ ଅର୍ଥେ, ସେ କଥା ଧରିଥିବ ଚିତ୍ତେ ।

ଇତ୍ୟାଦି—

କି ଭକ୍ତ-କି ପାପୀ-ତାପୀ ସମସ୍ତେ ଶ୍ରୀକୃଷ୍ଣଙ୍କ ଗୁଣମହିମା ଓ ଦୋଷ ମଧ୍ୟ ଯେଉଁ ଭାବରେ ହେଉ ସ୍ମରଣ ମନନ କଲେ ମୁକ୍ତିଲାଭ କରନ୍ତି । ଶ୍ରୀକୃଷ୍ଣ ପରିପୂର୍ଣ୍ଣ ଭଗବାନଙ୍କର ଅବତାର

ଥିବା ହେତୁ ତାଙ୍କର ଦୋଷମାନ ଦୋଷରୂପରେ ଗ୍ରାହ୍ୟ ନୁହେଁ । ତାଙ୍କର ଦୋଷ ଗୁଣ ଭିତରେ ଥିବାରୁ ଓ ତାଙ୍କର କଳା ପ୍ରକୃତିର ଅନୁକୂଳ ଥିବାରୁ ତାହା ନିର୍ଦ୍ଦୋଷ ଅଟେ । ପୁଣି ଏଥିରେ ଶତ୍ରୁମିତ୍ର ଭେଦାଭେଦ ନ ଥିବାରୁ ସମସ୍ତେ କୃଷ୍ଣ ଚିନ୍ତନ କଲେ, ଧ୍ୟାନ କଲେ, ସେହି ସତ୍ୟମୟ ପ୍ରଜ୍ଞା ପ୍ରତିଷ୍ଠା ହେଲେ ନିସ୍ତାର ଲାଭ କରନ୍ତି ।

ବିଂଶ ଅଧ୍ୟାୟରେ ଗ୍ରନ୍ଥ ଲେଖିବାରେ କବି କେଉଁ ପୋଥି ପୁରାଣର ସହାୟତା ନେଇଛନ୍ତି ତାର ତାଲିକା ଦେଇଛନ୍ତି ।

ଅତେଇଶହ ବର୍ଷ ତଳର ସୁଦୂର ଅତୀତରେ ଆମ ଓଡ଼ିଶା ଦେଶର ଏହି ଭକ୍ତ ନାରୀଙ୍କର ମହାନ୍ ଭକ୍ତିମୟ ପ୍ରତିଭା ଓ ପାଣ୍ଡିତ୍ୟ କଥା ଭାବିଲେ ଏ ଯୁଗର ଅନେକ ଉଚ୍ଚ ଶିକ୍ଷିତା ନାରୀ ବିସ୍ମୟରେ ମଥା ନଇଁ ଦେବେ, ସନ୍ଦେହ ନାହିଁ ।

ଭାରତବର୍ଷର ରାଜସ୍ଥାନର ରାଜପତ୍ନୀ ଭକ୍ତ ବିନୋଦିନୀ ମୀରା ବାଈଙ୍କର ଦୋହାଁ, ଭଜନ, କୀର୍ତ୍ତନ, ଓ ତାଙ୍କର ବିଳାସ ବ୍ୟସନଯୁକ୍ତ ରାଜପରିବାରର ଜୀବନ ପ୍ରତି ବୈରାଗ୍ୟ ସହିତ ଆମ ଓଡ଼ିଆ ଦେଶର ଏହି ଭକ୍ତ କବି ବୃନ୍ଦାବତୀ ସମତୁଳରେ ତୁଳ ହେବେ ନାହିଁ ସତ୍ୟ, କିନ୍ତୁ ଆମ ପ୍ରଦେଶ ସୀମା ଭିତରେ ବୃନ୍ଦାବତୀଦାସୀଙ୍କର ମହତ୍ତ୍ୱମୟ ନିରାସକ୍ତ, ଗାର୍ହସ୍ଥ୍ୟ ଜୀବନର କଥା ବିଗ୍ଭରିଲେ ନାରୀ କବିଙ୍କୁ କବି, ସାଧିକା, ଏବଂ ବିରହିଣୀ ଭାବରେ ମୀରାବାଈଙ୍କ ତୁଳ୍ୟ ଆସନ ଦିଆଯାଇ ପାରିବ । ଭକ୍ତି ସାହିତ୍ୟରେ କବି ବୃନ୍ଦାବତୀ ଦାସୀ ଅତୀତ ଗର୍ଭର ଅନ୍ଧକାର ଯୁଗରେ ସେତେ ଶାସ୍ତ୍ରରେ ପାରଦର୍ଶିନୀ ଥିଲେ, ଓ ଦର୍ଶନରେ ଗଭୀର ବ୍ୟୁତ୍ପତ୍ତି ଲଭିଥିଲେ ପୁଣି ତାଙ୍କର ପ୍ରତିଭା ବଳରେ ତାଙ୍କର ଗବେଷଣା ଜନିତ ଭାବରାଶିକୁ ଯେପରି ସରଳ ସହଜ ଭାଷାରେ

ମୂର୍ତ୍ତି କର ପାରୁଛନ୍ତି, ତାହା ଓଡ଼ିଶା ଦେଶରେ ନାଗ ପ୍ରତିଭାର ବିଶେଷ ଅବଦାନ ବୋଲି ଧରାଯିବ । କବିଙ୍କର ଧୃଷ୍ଣ ଲେଖଣୀରେ କଠିନ ଦାର୍ଶନିକ୍ ତତ୍ତ୍ୱସବୁ ସରଳ ସୁଗମ ହୋଇ ପାରୁଛି । ବିଷୟ ମାନଙ୍କର ଯୌକ୍ତିକତା ବୁଝିବାରେ ତାଙ୍କର କୁଶଳତା ଧନ୍ୟବାଦାର୍ହ । ତାଙ୍କର ଲେଖା ପଢ଼ିଲେ ଚାନ୍ତ୍ରିକର ଧ୍ୱନି ପାଠକ ପାଠିକା ମନରେ ଗଭୀର ରେଖାପାତକରେ । ନିରପେକ୍ଷ ସମାଲୋଚକ ମଧ୍ୟ ତାଙ୍କ ଭାବ ସମ୍ବନ୍ଧରେ ଅନୁକୂଳ ମତ ସୃଷ୍ଟି କରିବେ ।

ଶାସ୍ତ୍ରସିନ୍ଧୁ ମନ୍ଥି ଯେଉଁ ଅମୃତର ସନ୍ଧାନ ସେ ଜାତୀୟ ଜୀବନରେ ବାଢ଼ିଥିଲେ, ଯେଉଁ ଶୈଳୀ ଓ ସାମଞ୍ଜସ୍ୟ ତାଙ୍କ କବିତାରେ ଫୁଟାଇଥିଲେ ତାହା ତାଙ୍କର ଲଳିତକାନ୍ତ ପଦାବଳୀ ପଢ଼ିଲେ ଅନୁଭୂତ ହୁଏ ।

ତୃତୀୟ ଅଧ୍ୟାୟର ପରମ ତତ୍ତ୍ୱ ବିସ୍ତୃରରେ ସେ ଯେତେ ଗୁଡ଼ିଏ କଠିନ ଦୁର୍ବୋଧ୍ୟ ତତ୍ତ୍ୱ ଅଯୁକ୍ତ କରିଛନ୍ତି ଏବଂ ତାହାର ସରଳାର୍ଥ ବ୍ୟକ୍ତ କରିବାରେ ଯେଉଁ କୃତତ୍ତ୍ୱ ପ୍ରଦର୍ଶନ କରିଛନ୍ତି ତାହା ନାଗ ଲେଖଣୀରେ ବାସ୍ତବିକ୍ ଦୁର୍ଲଭ । ବଙ୍ଗଳାର ବୈଷ୍ଣବ ପଦାବଳୀ କର୍ତ୍ତାଙ୍କୁ ମଧ୍ୟ ଏହୁ ନାଗିକବି ଅନେକ ସ୍ଥାନରେ ଟପି ଯାଇଛନ୍ତି ।

କବିଙ୍କ ମତରେ ପୁରୁଷାବତାର ତିନିବିଧ । ପ୍ରଥମ, ସଙ୍କର୍ଷଣ ସେ ପ୍ରକୃତର ବୀକ୍ଷଣକର୍ତ୍ତା ଓ ମହତ୍ତ୍ୱର ସ୍ରଷ୍ଟା; ସେ କାରଣାର୍ଣ୍ଣବ ଶାୟୀ ଓ ଅନ୍ତର୍ଯ୍ୟାମୀ । ଦ୍ୱିତୀୟ ପୁରୁଷଙ୍କର ନାଭିକମଳରୁ ବ୍ରହ୍ମା ଜାତ ହୁଅନ୍ତି । ତୃତୀୟ ପୁରୁଷ ଭିନ୍ନ ଭିନ୍ନ ରୂପରେ ପ୍ରତି ଦେହର ଅନ୍ତର୍ଯ୍ୟାମୀ ଅଟନ୍ତି । ସେ କ୍ଷୀରୋଦଶାୟୀ ଅନିରୁଦ୍ଧ ନାମରେ ଖ୍ୟାତ ।

ଏହିଭଳି କଠିନ ତତ୍ତ୍ୱମାନଙ୍କର ନିଗୂଢ଼ ଅର୍ଥକୁ ସରଳ ଭାଷାରେ ଯେଉଁ ନାଭା କବି ପ୍ରକାଶ କରି ପାରିଛନ୍ତି ତାଙ୍କର ତୁଳନା କାହିଁ ?

ଶ୍ରୀକୃଷ୍ଣଙ୍କ ଗୁଣଧ୍ୟାନ ଓ ସେବା ଧ୍ୟାନ ମାନଙ୍କର ବିଶେଷତଃ ଯୋଗ ଧ୍ୟାନରେ ସେ ତାଂକ ଇଷ୍ଟଦେବତାଙ୍କୁ ଯେପରି ରୂପ-ରଙ୍ଗରେ ଚିତ୍ରଣ କରିଛନ୍ତି ଓ ତାଙ୍କୁ ଯେପରି ପରିପୂର୍ଣ୍ଣ ବ୍ରହ୍ମରୂପରେ ରୂପାୟିତ କରି ପାରିଛନ୍ତି ତାହା କେବଳ ବୈଷ୍ଣବଜନ ଚିତ୍ତରେ ନୁହେଁ ଯେ କୌଣସି ସାହିତ୍ୟ ରସିକ ସୁଧୀଜନ ମନକୁ ମଧ୍ୟ ଆକୃଷ୍ଟ କରିପାରିବ ।

ତୁଳସୀ ନାଭା କବି ତାଙ୍କର ସମସାମୟିକ ବୈଷ୍ଣବ କବି ମାନଙ୍କ ତୁଲ୍ୟ ଚରିତବିତ ପ୍ରଥାନୁସାରେ ଶ୍ରୀ ଚୈତନ୍ୟ ବନ୍ଦନା, କାବ୍ୟରଚନାର ଉଦ୍ଦେଶ୍ୟ ବର୍ଣ୍ଣନା, ରାଗାନୁଗା ଭକ୍ତିର ମହତ୍ତ୍ୱ ଫଳ ନିନ୍ଦା ପ୍ରଭୃତି ଦ୍ୱାରା ଗ୍ରନ୍ଥରଚନାର ସଙ୍ଗତି ବିଧାନ କରି ଯାଇଛନ୍ତି ।

ଏଣୁ ଏହି ଭକ୍ତମତ ନାଭା କବିଙ୍କ ନିକଟରେ ଆମ୍ଭମାନଙ୍କ ମସ୍ତକ ସ୍ୱତଃ ନତ ହୋଇ ପଡ଼େ ।



# ଅରକ୍ଷିତ ଦାସ

ଭକ୍ତ ଅରକ୍ଷିତ ଦାସଙ୍କ ରଚିତ 'ମହାମଣ୍ଡଳଗୀତା' ସମ୍ପୂର୍ଣ୍ଣ ଭାବରେ ପ୍ରକାଶିତ ହୋଇନାହିଁ । ଏହା ୧୬ ଅଧ୍ୟାୟ ବିଶିଷ୍ଟ । ସେଥିମଧ୍ୟରୁ କେବଳ ୨୧ ଅଧ୍ୟାୟ ପୁସ୍ତକାକାରରେ ପ୍ରକାଶିତ ହୋଇଅଛି । ଅବଶିଷ୍ଟ ଅଧ୍ୟାୟମାନ ପୋଥିରେ, ଖଣ୍ଡଗିରି ଓ ଲଳାଟଟିବିରେ ବିଦ୍ୟମାନ ଥିବାର ଜଣାଯାଏ । ପ୍ରଥମାଧ୍ୟାୟରୁ ଆରମ୍ଭକରି କ୍ରମାନ୍ୱୟରେ ଯେ ୨୧ ଅଧ୍ୟାୟ ପୁସ୍ତକାକାରରେ ପ୍ରକାଶିତ ହୋଇଅଛି, ତାହା ମଧ୍ୟ ନୁହେଁ । ପ୍ରଥମ ୫ଟି ଅଧ୍ୟାୟ କ୍ରମରେ ପୋଥି ସହିତ ମିଳୁଅଛି, କିନ୍ତୁ ଅପର ଅଧ୍ୟାୟ ମାନଙ୍କରେ କ୍ରମ ଲକ୍ଷିତ ହୁଏନାହିଁ । ଏଥିରୁ ଜଣାପଡ଼େ ଯେ ପୁସ୍ତକ ପ୍ରକାଶକ ପୁସ୍ତକଟି ସମ୍ପୂର୍ଣ୍ଣ ଭାବରେ ପ୍ରକାଶ କରି ନପାରି କେବଳ ସଂକ୍ଷିପ୍ତ ଭାବରେ ୨୧ଟି ଅଧ୍ୟାୟ ପ୍ରକାଶ କରିଅଛନ୍ତି । ଅବଶିଷ୍ଟ ଅଧ୍ୟାୟ

ମାନଙ୍କରୁ ୫ ଅଧ୍ୟାୟରେ ଓଁ ଙ୍କାର ସ୍ୱରୂପ ଓ ମହାତ୍ମ୍ୟ ବର୍ଣ୍ଣନ ୪ର୍ଥ ଅଧ୍ୟାୟରେ ଆତ୍ମାର ମହାତ୍ମ୍ୟ କଥନ, ୮।୯ ଅଧ୍ୟାୟରେ ଈଶ୍ୱର ପ୍ରାର୍ଥନା ଏବଂ ୫୬ ଅଧ୍ୟାୟଠାରୁ ୮୦ ଅଧ୍ୟାୟରେ ସ୍ୱୀୟ ଜୀବନରେ ସଂଘଟିତ ଭ୍ରମଣ କାଳୀନ କଷ୍ଟଦାୟକ ବିଶେଷ ଘଟଣାବଳୀର ବିବରଣ ଦେଖାଯାଏ। ପୋଥିରେ ୮୨ ଅଧ୍ୟାୟ ପର୍ଯ୍ୟନ୍ତ ଠିକ୍ ଥିବାପରି ଜଣାପଡ଼େ, କିନ୍ତୁ ଅବଶିଷ୍ଟ ୧୪ ଅଧ୍ୟାୟରେ ପୂର୍ବୋକ୍ତ ଭାବଭଙ୍ଗୀ ଅନ୍ୟ କିଛି ଦେଖାଯାଏ ନାହିଁ। ସେଥିରୁ ଜଣାପଡ଼େ ଯେ ଏହି ୧୪ଟି ଅଧ୍ୟାୟ ଅରକ୍ଷିତ ଦାସଙ୍କର ଶିଷ୍ୟ ପ୍ରଶିଷ୍ୟମାନଙ୍କ ଦ୍ୱାରା ଲିଖିତ। ତାହା ତାହାଙ୍କର ରଚନା ପରି ଜଣା ପଡ଼ୁନାହିଁ। ଶେଷ ୧୦ ଅଧ୍ୟାୟର ଭାଷା ଓ ରଚନା ଭଙ୍ଗି ମଧ୍ୟ ଭିନ୍ନ। ସ୍ଥାନେ ସ୍ଥାନେ କେବଳ ପୂର୍ବୋକ୍ତ କୌଣସି କୌଣସି ପଦର ଅବତାରଣା ଦେଖାଯାଏ। ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ଅରକ୍ଷିତ ଦାସ 'ମହୀମଣ୍ଡଳଗୀତା'କୁ ୮୪ ଅଧ୍ୟାୟରେ ସମାପ୍ତ କରିଥିଲେ, ପରେ ତାଙ୍କର ଶିଷ୍ୟ ପ୍ରଶିଷ୍ୟ ମାନଙ୍କ ଦ୍ୱାରା ତାହା ପରିବର୍ଦ୍ଧିତ ହୋଇଅଛି। ପୁସ୍ତକଟି ପୂର୍ଣ୍ଣ ଭାବରେ ପ୍ରକାଶିତ ନହେଲେ ତାହାର ସବିସ୍ତର ଆଲୋଚନା ଅସମ୍ଭବ।

ମହୀମଣ୍ଡଳ ଗୀତାର ପ୍ରକାଶିତ ୨୧ ଅଧ୍ୟାୟ ମଧ୍ୟରେ ଅରକ୍ଷିତ ଦାସଙ୍କର ଜୀବନ ଘଟିତ ବିଶେଷ କୌଣସି ଘଟଣା ବର୍ଣ୍ଣିତ ନାହିଁ। ଲେଙ୍ଗଟ ଖଣ୍ଡଗିରିରେ ଗୁମ୍ଫାମାନ ପରିଷ୍କୃତ କରାଇ କିଛିକାଳ ବାସକରି ତାହାକୁ ତ୍ୟାଗକରି ଯିବାର ପ୍ରବଳ ଆକାଂକ୍ଷା ଏକାଦଶ ଓ ଦ୍ୱାଦଶ ଅଧ୍ୟାୟରେ ସ୍ଥାନେ ସ୍ଥାନେ ପ୍ରକାଶ କରିଅଛନ୍ତି। ଏଥିରୁ ଜଣାପଡ଼ୁଅଛି ଯେ ଅରକ୍ଷିତ ଦାସ ଖଣ୍ଡଗିରିରେ ବାସ କଲାବେଳେ ଏହି ଅଧ୍ୟାୟମାନ ଲେଖି ଯାଇଅଛନ୍ତି। ଲୋକେ କହନ୍ତି ଯେ ଅରକ୍ଷିତ ଦାସ ଖଣ୍ଡଗିରିରେ ଥିବାବେଳେ ମହୀମଣ୍ଡଳଗୀତାର

୩୫ ଅଧ୍ୟାୟ ମାତ୍ର ଲେଖିଥିଲେ, ଅବଶିଷ୍ଟ ଅଧ୍ୟାୟମାନ ଲକ୍ଷ୍ମୀଧରିବ-ଠାରେ ଲିଖିତ ହୋଇଅଛି । ପୋଥିରେ ଯେଉଁ ୧୦ ଅଧ୍ୟାୟରେ ତାଙ୍କର ଜୀବନ ସଂକ୍ରାନ୍ତ ବିଷୟ ବର୍ଣ୍ଣିତ ଅଛି ସେଥିରେ ତାଙ୍କର ଜନ୍ମସ୍ଥାନ ବା ଜନ୍ମକାଳର ବଂଶ ପରିଚୟ ବା ବାଲ୍ୟକାଳର କିଛି ଉଲ୍ଲେଖ ନାହିଁ । ସେଥିରେ କେବଳ ତାଙ୍କର ଗୃହତ୍ୟାଗାନନ୍ତର ସନ୍ନ୍ୟାସବ୍ରତ ଗ୍ରହଣ ପରବର୍ତ୍ତୀ ଭ୍ରମଣାବସ୍ଥାରେ ଘଟିତ କ୍ଳେଶପ୍ରଦ କେତେକ ଘଟଣାର ଉଲ୍ଲେଖ ଏବଂ ଭ୍ରମଣର କୋଟିଏ ଆନୁକ୍ରମିକ ବର୍ଣ୍ଣନା ଦେଖାଯାଏ । ସେହି ଭ୍ରମଣ ବର୍ଣ୍ଣନାରୁ ଜଣାପଡ଼େ ଯେ ସେ ଗଞ୍ଜାମର ଅନେକ ପାହାଡ଼, ପର୍ବତ ବୁଲି ବୁଲି, ଖଣ୍ଡଗିରି, ହରଚଣ୍ଡୀ, କନକା, କେନ୍ଦ୍ରପଡ଼ା ପ୍ରଭୃତି ଦେଇ ନଳଡଗିରିକୁ ଅସି ସେଠାରେ ଶେଷ ଜୀବନ ଯାପନ କରିଥିଲେ ।

ସେହି ୧୦ ଅଧ୍ୟାୟ ପାଠରୁ ଜଣାପଡ଼େ ଯେ ସେ କେରଣ୍ଡି ମାଳ ପାହାଡ଼ ନିକଟବର୍ତ୍ତୀ ଗଞ୍ଜାମର କୌଣସି ସ୍ଥାନରେ ଜନ୍ମ ଗ୍ରହଣ କରିଥିଲେ । 'ଅରକ୍ଷିତ ଦାସ ବଡ଼ଖେମଣ୍ଡି ରାଜବଂଶଧର' ବୋଲି ଲୋକ ମୁଖରୁ ଏବଂ ତାଙ୍କ ପ୍ରଶିଷ୍ୟଙ୍କ ମୁଖରୁ ଶୁଣାଯାଏ । ସ୍ଥଳ ବିଶେଷରେ ଲେଖକଙ୍କର ଉକ୍ତିରୁ ମଧ୍ୟ ଜଣାପଡ଼େ ଯେ ସେ ରାଜବଂଶଧର ଥିଲେ ।

'ଘରେ ମୁଁ ଥିଲି ଯେତେଦିନ,
କି ଭୋଗ କରିନାହିଁ ପୁଣ ।
ପାଟ ପଟନ୍ତ ପୀତାମ୍ବର,
ଚୁଆ ଚନ୍ଦନ ଅଳଙ୍କାର ।
ଖଟ ପଲଙ୍କ ଯେ ସୁପାତି,
କୁଙ୍କୁମ ଶରୀରେ ଲେପନ୍ତି ।

ନାନା ପୁଷ୍ପ ଯେ ଶିରେ ଧେନି
ତୁରଙ୍ଗ ଉପରେ ଯେ ପୁଣି ।
ଖିର ଖେଚଡ଼ି ପିଠା ଅନ୍ନ,
ଖଣ୍ଡ ଶାକର ଘୃତ ପୂର୍ଣ୍ଣ ।
ନାନାବିଧ ଭୋଗ ଅଛି ଯେତେ,
ମୁଁ କିସ କହିବଇଁ ଚିତ୍ତେ ।
ଏ ସବୁ ସୁଖଗୁଡ଼ି ମୁହିଁ,
ଛଡ଼ିଲେ ସେବାଳି କଷ୍ଟ ପାଇ ।”

କବି ଦୁଃଖରେ ନିପୀଡ଼ିତ ହେଲାବେଳେ ନିଜର ପୂର୍ବାନୁଭୂତ ଯେଉଁ ସୁଖସ୍ମୃତିମାନ ହୃଦୟରେ ଜାଗ୍ରତ କରିଅଛନ୍ତି ସେଥିରୁ ସ୍ପଷ୍ଟରୂପେ ପ୍ରତୀତ ହେଉଅଛି ଯେ ସେ ଜଣେ ସାମାନ୍ୟ ରାଜବଂଶଧର ନଥିଲେ, କିନ୍ତୁ ରାଜାଙ୍କର ନିକଟ ସଂପୃକ୍ତ ଲୋକ ଥିଲେ । ଏହି ହେତୁରୁ ତାଙ୍କୁ ରାଜାଙ୍କର ଭାଇ ବୋଲି ମଧ୍ୟ ଅନୁମାନ କରାଯାଇ ପାରେ । ଢେଙ୍କାଣ୍ଡି ମାଳ ପାହାଡ଼ ବଡ଼ ଖେମିଣ୍ଡିର ନିକଟ-ବର୍ତ୍ତୀ । ଅରକ୍ଷିତ ଦାସ ପ୍ରଥମରେ ଗୃହତ୍ୟାଗ କରି ସେଠାରେ ବାସ କରି ଯୋଗସାଧନା କରିଥିବା ବିଷୟ ଉଲ୍ଲେଖ କରିଅଛନ୍ତି । ସୁତରାଂ ଅରକ୍ଷିତ ଦାସ ଯେ ବଡ଼ ଖେମଣ୍ଡି ରାଜବଂଶଧର ଥିଲେ ଏଥିରେ କୌଣସି ସନ୍ଦେହ ନାହିଁ ।

ଅରକ୍ଷିତ ଦାସଙ୍କର ଜନ୍ମକାଳ ନିରୂପଣ କରିବା ମଧ୍ୟ ସହଜ ନୁହେଁ । ମହାମଣ୍ଡଳ ଗୀତାର ଭାଷା ଓ ଭାବରୁ ଜଣାପଡ଼େ ଯେ ସେ ୧୮୦୦ ଶତାବ୍ଦୀର ଲୋକ ଥିଲେ । ଓଡ଼ାସୁଣୀ ପାହାଡ଼ସ୍ଥିତ ମଠର କାଗଜପତ୍ରରୁ ଜଣାପଡ଼େ ଯେ ଅରକ୍ଷିତ ଦାସ ୮୦ ବର୍ଷ ବୟସରେ ୧୨୭୫ ସାଲରେ ସେଠାରେ ସମାଧି ଗ୍ରହଣ କରିଥିଲେ । ଓଡ଼ାସୁଣୀ ମଠରେ ଅରକ୍ଷିତ ଦାସଙ୍କର ଶିଷ୍ୟ ରାମଚନ୍ଦ୍ର ଦାସ,

ତାଙ୍କର ଶିଷ୍ୟ ବୈରାଗୀ ଦାସ ଓ ପ୍ରୟାଗଦାସ ଜୀବିତ ଥିଲେ । ଅରକ୍ଷିତ ଦାସ ଶ ଏବର୍ଷ ହେଲା ସମାଧି ଗ୍ରହଣ କରିଅଛନ୍ତି ବୋଲି ଜନପ୍ରବାଦ ମଧ୍ୟ ଶୁଣାଯାଏ । ସୁତରାଂ ଅରକ୍ଷିତ ଦାସ ଯେ ୧୮୦୦ ଶତାବ୍ଦୀ ଲୋକ ଏଥିରେ ସନ୍ଦେହ ନାହିଁ । ମଠର କାଗଜ ପତ୍ରାନୁସାରେ ୧୧୭୫ ସାଲ ଅରକ୍ଷିତ ଦାସଙ୍କର ଜନ୍ମକାଳ ରୂପେ ଗୃହୀତ ହୋଇପାରେ ।

ପୂର୍ବୋକ୍ତ ପ୍ରମାଣମାନଙ୍କରୁ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହେଉଅଛି ଯେ ଅରକ୍ଷିତ ଦାସ ସନ ୧୧୭୫ ସାଲରେ ବଡ଼ ଖେମଣ୍ଡି ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ନାମ ଡେଡେଡବେଲେ ବୀରବର ଦେବ ଥିଲା ବୋଲି ଶୁଣାଯାଏ । ଅନୁମିତ ହେଉଅଛି ଯେ ଅରକ୍ଷିତ ଦାସ ତାଙ୍କର ପ୍ରକୃତ ନାମ ନ ଥିଲା । ଗୃହ ତ୍ୟାଗ କରି 'ଅରକ୍ଷିତ' ଭାବରେ ଯାହାଙ୍କମାନଙ୍କରେ ବୁଲି-ଥିବାରୁ ଲୋକେ ତାଙ୍କୁ 'ଅରକ୍ଷିତ ଦାସ'' ଆଖ୍ୟା ପ୍ରଦାନ କରିଥିଲେ ଅଥବା ସେ ମଧ୍ୟ ଗୃହ ସହିତ ନିଜର କୌଣସି ସଂପର୍କ ନ ରହିବା ଶ୍ରେୟସ୍କର ମଣି ନିଜ କାର୍ଯ୍ୟାନୁସାରେ ଏହି ନାମଟି ପସନ୍ଦ କରି "ଅରକ୍ଷିତ ଦାସ ନାମରେ" ନିଜକୁ ପରିଚିତ କରାଇ ଅଛନ୍ତି । ଲେଖକଙ୍କର ବାଲ୍ୟଜୀବନ ବିଷୟରେ ଆମ୍ଭମାନଙ୍କର ବିଶେଷ କିଛି ଜାଣିବାର ସୁଯୋଗ ଓ ସୁବିଧା ନାହିଁ । ସେ ନିଜର ବାଲ୍ୟକାଳର ଶିକ୍ଷା ଦୀକ୍ଷା ବିଷୟରେ କୌଣସିଠାରେ କିଛି ଲେଖି ନାହାନ୍ତି । ତଥାପି ଅନୁମିତ ହୁଏ ଯେ ତାଙ୍କର ସଂସ୍କୃତରେ ବିଶେଷ କିଛି ପାରଦର୍ଶିତା ନ ଥିଲା । ସେ ରାଜକୁମାର ଥିବାରୁ ଶିକ୍ଷାର ବିଶେଷ ସୁଯୋଗ ପାଇଥିଲେ ମଧ୍ୟ ତାହାର ଉପଯୁକ୍ତ ବ୍ୟବହାର କରି ନ ଥିଲେ । ତାଙ୍କର ମନ ବାଲ୍ୟକାଳରୁ ଈଶ୍ବରଙ୍କଠାରେ ଆସକ୍ତ ଥିବାରୁ ସେ କେତେକଖଣ୍ଡ ଭକ୍ତ ଗ୍ରନ୍ଥ

ଅଧ୍ୟୟନ କରିଥିଲେ । ଜଗନ୍ନାଥ ଦାସଙ୍କ ଭାଗବତ ତାଙ୍କ ଅଧ୍ୟୟନର ପ୍ରଧାନ ସ୍ଥଳ ଥିଲା ! ତାହା ଦ୍ୱାରା ହିଁ ତାଙ୍କ ଜୀବନରେ ଗୋଟିଏ ମହତ୍ ପରିବର୍ତ୍ତନ ଘଟିଥିଲା । ଭାଗବତର ଏକାଦଶସ୍କନ୍ଧୋକ୍ତ ଅବଧୂତ ଦୀକ୍ଷାକୁ ସେ ଈଶ୍ୱର ପ୍ରାପ୍ତିର ସର୍ବଶ୍ରେଷ୍ଠ ଉପାୟ ମଣି ସ୍ୱୀୟ ଜୀବନତରୀର ଭେଳକରୂପେ ସେହି ଦୀକ୍ଷାକୁ ଅବଲମ୍ବନ କରିଥିଲେ । ତାଙ୍କର ଲେଖାରୁ ଜଣାପଡ଼େ ଯେ ସେ ନିର୍ଜ୍ଜନତା ପ୍ରିୟ ଥିଲେ । "ହାଡ଼ ପର୍ବତରେ ବୁଲଅ, ମୋ ମନ ଶାନ୍ତ ଯେ କରଅ ।" ଏହି ଉକ୍ତମାନଙ୍କରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ଲେଖକ ସତତ ଜନ ସମାଗମର ଦୂରରେ ରହିବାକୁ ଯଥାସାଧ୍ୟ ଚେଷ୍ଟା କରୁଥିଲେ । ବାଲ୍ୟକାଳରେ ମଧ୍ୟ ସେ ଅତ୍ୟନ୍ତ ଚିନ୍ତାଶୀଳ ଓ ଈଶ୍ୱର-ପରାୟଣ ଥିବାର ଜଣା ପଡୁଅଛି । ଅବଧୂତଙ୍କର ଭକ୍ତି ଦୀକ୍ଷାରେ ନିଜକୁ ଦୀକ୍ଷିତ କରି ସେ କେତେକ ଯୋଗ-ଶାସ୍ତ୍ର ଓ ବେଦାନ୍ତ ଅଧ୍ୟୟନ କରିଥିଲେ । ଏହି ଯୋଗ ସିଦ୍ଧି କରି ଆତ୍ମାରାମ ବ୍ରହ୍ମୋପଲବ୍ଧି ଉଦ୍ଦେଶ୍ୟରେ ସେ ଗୃହତ୍ୟାଗ କରି ଅରଣ୍ୟରେ ବାସ କରିବାକୁ ମନସ୍ଥ କରିଥିଲେ ମଧ୍ୟ ଅନେକ ଦିନ ପର୍ଯ୍ୟନ୍ତ ତାହା କାର୍ଯ୍ୟରେ ପରିଣତ କରି ପାରି ନଥିଲେ । ଅଳ୍ପ ବୟସରେ ଗୃହର ମାୟା-ମମତା ତ୍ୟାଗ କରିବା ସହଜ ସାଧ୍ୟ ନୁହେଁ । ବିଶେଷତଃ ରାଜକୁଳରେ ଜନ୍ମଗ୍ରହଣ କରି ଆଜନ୍ମ ସୁଖ କୋଡ଼ରେ ଲାଳିତପାଳିତ ହୋଇ ସମସ୍ତ ସୁଖରେ ଜଳାଞ୍ଜଳି ଦେଇ ବନବାସ କଷ୍ଟ ଅନୁଭବ କରିବାକୁ ମନ ପ୍ରସ୍ତୁତ କରିବା ଅଳ୍ପ ଦିନର କାର୍ଯ୍ୟ ନୁହେଁ । ସେଥିପାଇଁ ତାଙ୍କର ୨ ବର୍ଷକାଳ ଅତୀତ ହୋଇ ଯାଇଥିଲା । ୧୭ ବର୍ଷ ବୟସରେ ତାଙ୍କର ଗୃହ ସୁଖକୁ ଭ୍ରୂକ୍ଷେପ ନ କରି ବନବାସୀ ହେବାକୁ ପ୍ରବଳ ଆକାଙ୍କ୍ଷା ଜାତ ହୋଇଥିଲେ ମଧ୍ୟ ୧୯ ବର୍ଷ ବୟସରେ ନିଜକୁ ମନୋନୁଯାୟୀ ଗଠିତ ଓ ପ୍ରସ୍ତୁତ

କରିଥିଲେ । ଅଳ୍ପ ବୟସ ହେଲେ ମଧ୍ୟ ତାଙ୍କ ହୃଦୟ ଓ ମନର ବଳ ଅତ୍ୟନ୍ତ ପ୍ରବଳ ଥିଲା । ସୁତରାଂ ସେ ନାନାବିଧ ବାଧା ବିଘ୍ନ, ଘାତ, ପ୍ରତିଘାତ ସହ୍ୟ କଲେ ମଧ୍ୟ ନିଜର କର୍ତ୍ତବ୍ୟ ପଥରୁ ପରାନ୍ମୁଖ ହୋଇ ନ ଥିଲେ । ତାଙ୍କର ମନର ବଳ ଆଗରେ ସମସ୍ତ ପ୍ରତିବନ୍ଧକ ଦୂର ହୋଇ ଯାଇଥିଲା । ସେ ନିଜର କର୍ତ୍ତବ୍ୟ ସ୍ଥିର କରି ଈଶ୍ୱରଙ୍କୁ ଏକମାତ୍ର ଲକ୍ଷ ରଖି ୧୯ ବର୍ଷ ବୟସରେ ନିଜର ଗୃହ ତ୍ୟାଗ କରିଥିଲେ ।

ଗୃହ ତ୍ୟାଗ କରି ଦଟିପଣ୍ଡ୍ରୀ ନାମକ ଗ୍ରାମରେ ବୈଶାଖ ମାସ ଅଷ୍ଟମୀ ତିଥିରେ କୌପୀନ ଗ୍ରହଣ କରି ଗୃହକୁ ଶୋକପୂର୍ଣ୍ଣ ପତ୍ର ଟିଏ ପ୍ରଦାନ କରିଥିଲେ । ସେଠାରେ ମାତା ପିତା ତାଙ୍କର ପଥରେ ପ୍ରତିବନ୍ଧକ ହେବେ ଭାବି ସେହିଦିନ ରାତିରେ ଅଲକ୍ଷିତ ଭାବରେ ସେ ଗ୍ରାମ ତ୍ୟାଗ କରିଥିଲେ । କିନ୍ତୁ ୪ କ୍ରୋଶ ମାତ୍ର ପଥ ଅତିକ୍ରମଣ କରିଗଲାପରେ ପ୍ରବଳ ବାତ୍ୟା ସହିତ ପ୍ରଚଣ୍ଡ ବୃଷ୍ଟି ହେବାରୁ ତାଙ୍କର ମନର ଭାବ ଇତସ୍ତତଃ ବିକ୍ଷିପ୍ତ ହୋଇଥିଲା ।

"ପ୍ରଭୁ ଙ୍କ ମାୟା ମୋତେ କଲା,
ଏ ଅନ୍ଧକାର ଯେ ଘୋଟିଲା ।
କି ବୁଦ୍ଧି କରିବଇଁ ମୁହିଁ,
କାହିଁ ପଶିବି କେଉଁଠାଇଁ ।
ଏ ମନ ବଡ଼ ଭୟ କଲା,
ଯିବଇ ନାହିଁ ଯେ ବୋଇଲା ।"

ଏହି ପ୍ରଥମ ଦୁଃଖର ତୀବ୍ର କଷାଘାତ ସହ୍ୟ କଲେ ମଧ୍ୟ ସେ ନିଜର ଅବଲମ୍ବିତ ପଥରୁ ତିଳେମାତ୍ର ବିଚଳିତ ହୋଇ ନ ଥିଲେ । "suffering was the dabge of his life" ଦୁଃଖ, କଷ୍ଟ ସମସ୍ତ ଅକାତର ଭାବରେ ସହ୍ୟ କରି ସ୍ୱରଟି ବନ ମଧ୍ୟରେ

ସ୍ଥାପିତ କରିଥିଲେ । ପରଦିନ ପ୍ରାତଃକାଳରେ କେଉଣ୍ଡି ମାଳ ପାହାଡ଼ରେ ପହୁଞ୍ଚି କହୁଥିଲେ "ଏଠାରେ ବଙ୍କତ ସାଧିବ, ତାହାର ସଙ୍ଗ ନ କରିବ ।'' ସେଠାରେ ଅନେକ ଦିନ ରହି ଗୋଟିଏ ଗୁମ୍ଫାରେ ଯୋଗ ସାଧନ କରି ଅଳ୍ପ ପରିମାଣରେ ସିଦ୍ଧିଲାଭ କରିଥିଲେ ଏବଂ ସେହିଦିନ ଠାରୁ ସେହି ଗୁମ୍ଫା 'ଯୋଗୀ-ଗୁମ୍ଫା' ନାମରେ ଅଭିହିତ ହେଉଅଛିବାର ଜନପ୍ରବାଦ ଅଛି । ଏହି ପର୍ବତରେ ସେ ଈଶ୍ୱରଙ୍କ ଦ୍ୱାରା କଠୋର ପରୀକ୍ଷାରେ ପରୀକ୍ଷିତ ହୋଇଥିଲେ । ସର୍ବ ପ୍ରଥମରେ ଅନ୍ନ ତ୍ୟାଗ କରି ଫଳମୂଳ ଆହାର କରିବା, ଖରା ବର୍ଷା ସମସ୍ତବେଳରେ ସହ୍ୟ କରିବା ଅତ୍ୟନ୍ତ କଷ୍ଟପ୍ରଦ ହୋଇଥିଲା । ମାତା ପିତା ମଧ୍ୟ ଗୃହକୁ ଫେରାଇ ନେବାକୁ ନାନାବିଧ ପ୍ରଲୋଭନ ଦେଖାଇଥିଲେ । ତଥାପି ସେ ତଳେ ମାୟା ପ୍ରଲୁବ୍ଧ ନ ହୋଇ ଯୋଗସାଧନାରେ ଅଳ୍ପ ସିଦ୍ଧି ଲାଭ କରି ଗୃହର ପ୍ରଲୋଭନରୁ ଦୂରରେ ରହିବା ଇଚ୍ଛାରେ ସେହି ପର୍ବତ ତ୍ୟାଗ କରିଥିଲେ । ସେହି ପାହାଡ଼ ତଳରେ ଗୋଟିଏ ବଟବୃକ୍ଷ ମୂଳରେ କେତେକ ବାଳକ ଭାଗବତ ପାଠ କରୁଥିଲେ । ଅରକ୍ଷିତ ଦାସ ସେମାନଙ୍କର ଭ୍ରମ ଓ ଅଶୁଦ୍ଧି ସଂଶୋଧନ କରି ଦେବାରୁ ସେମାନେ ଏହାଙ୍କୁ ପଣ୍ଡିତ ଭାବି ଗ୍ରାମକୁ ନେଇ ଯାଇଥିଲେ । ସେହି ଗ୍ରାମବାସୀମାନେ ଏହାଙ୍କୁ ସେଠାରେ ରହିବାକୁ ଅନୁନୟ କରିଥିଲେ ଏବଂ ଅରକ୍ଷିତ ଦାସ [illegible]ନଙ୍କୁ "ପୁଣି ଫେରନ୍ତା ସେଠାରେ ରହିବେ'' ବୋଲି କହି ନିଜ ଗନ୍ତବ୍ୟ ପଥରେ ପ୍ରସ୍ଥାନ କରିଥିଲେ । ସେଠାରୁ ଯାଉଁ ଯାଉଁ ଗୋଟିଏ ଶବରପଲ୍ଲିରେ ପହୁଞ୍ଚିଲେ । ଶବରମାନେ ତାଙ୍କୁ ଅତିଥିରୂପରେ ଗ୍ରହଣ କରି ଅନ୍ନପାକ କରିବାକୁ କହିବାରୁ ସେ ସେମାନଙ୍କ ଘରେ ଖାଇବାକୁ ଅନିଚ୍ଛା ପ୍ରକାଶ କରିଥିଲେ ।

"ତା ଶୁଣି ବଡ଼ ଭୟ କଲେ,
ଶବର ଜାତି ସେ ବୋଇଲେ ।
ମୁହିଁ ବୋଇଲି ତୁମ୍ଭ ଜାତି,
ଏଥି ନ କର ତୁମ୍ଭେ ଭ୍ରାନ୍ତି ।
ତଅଣ ଶାକ କିଛି ନାହିଁ,
ଅମ୍ଳ କସି ଗୋଟିଏ ଦେଇ ।
ତା ଦେଖି ବିଧାତା ସୁମରି,
ଖାଇଲି ମୁଣ୍ଡା ଦୁଇ ଗୃହ ।"

ଏହିଠାରେ ସେ ପ୍ରଥମେ ଜାତିଗତ ପ୍ରାର୍ଥକ୍ୟ ଲଙ୍ଘନ କରିବାକୁ ଯାଇ ମନରେ ତୀବ୍ର କଷ୍ଟ ଅନୁଭବ କରି ଅଛନ୍ତି । ତଥାପି ସେ କଷ୍ଟ ପ୍ରତି ଭ୍ରୂକ୍ଷେପ ନ କରି ସ୍ୱୀୟ ବିବେକ ପ୍ରଣୋଦିତ ପଥ ଅନୁସରଣ କରିଥିଲେ । ସେଠାରୁ ଯାଇ ଗୋଟିଏ ଗ୍ରାମରେ ପହଞ୍ଚିଲେ । ସେହି ଗ୍ରାମର ବାଳକମାନେ ତାଙ୍କୁ "ବାଘ୍ୟା" ଭାବି ମାରି ଗୋଡ଼ାଇଲେ । ବାଳକମାନଙ୍କ ଅଧାତରୁ ନିଜକୁ ରକ୍ଷାକରିବା ନିମିତ୍ତ ଗୋଟିଏ ମେଲା ଘରେ ଯାଇ ଲୁଚିଗଲେ । ସେହି ଗ୍ରାମର ଜଣେ ବ୍ରାହ୍ମଣ ତାଙ୍କୁ ସେଠାରେ ଲୁଚିବାର ଦେଖିଥିଲି, ବ୍ରାହ୍ମଣର ପୁତ୍ର ବିବାହ ହୋଇଥିବାରୁ ସେ ଅରକ୍ଷିତ ଦାସଙ୍କୁ ରହସରେ ଗୃହକୁ ଡାକି ନେଇ ନିଜର ବିଧବା କନ୍ୟାଟିକୁ ତାହାଙ୍କର ଶୁଶ୍ରୂଷାର୍ଥ ନିଯୋଜିତ କରିଥିଲି । ପୂର୍ଣ୍ଣ-ଯୌବନା ବିଧବା ବ୍ରାହ୍ମଣକନ୍ୟା ଅରକ୍ଷିତ ଦାସଙ୍କୁ ଉତ୍ତମରୂପେ ମିଷ୍ଟାନ୍ନ ପ୍ରଭୃତି ଭକ୍ଷଣ କରିବାକୁ ଦେଇଥିଲି । ବ୍ରାହ୍ମଣକନ୍ୟା ପୂର୍ଣ୍ଣ ଯୌବନାବସ୍ଥାରେ ପତି ହରାଇଥିବାରୁ ଅରକ୍ଷିତ ଦାସଙ୍କର ନିଃସର୍ଗ ସୁନ୍ଦରରୂପ-ମାଧୁରୀ ସନ୍ଦର୍ଶନ କରି ବିମୁଗ୍ଧ

ହୋଇ ପଡ଼ିଥିଲା ଏବଂ ନିଜର ବିବାହ ନିମିତ୍ତ ତାହାଙ୍କୁ ପ୍ରଲୋଭିତ କରି କହୁଥିଲା ।—

"ବିବାହ ହୋଇଣ ସୁଖେ ରହ,
ଏ କଷ୍ଟ ସହିବ କି ଦେହ ।
ସ୍ତ୍ରୀଙ୍କ ଭୋଗ ଯେ ନ କରେ,
ମୂର୍ଖଟି ବୋଲିଏ ସଂସାରରେ ।
ଏମନ୍ତେ ସେ ତରୁଣୀ କହେ,
ମୋ ମନ ଉତ୍ସୁନ କରାଇ ।"

ଅଯାଚିତ ଭାବରେ ଉପନୀତ ସୁନ୍ଦରୀ ବ୍ରାହ୍ମଣୀର ସୌନ୍ଦର୍ଯ୍ୟ ଦର୍ଶନରେ ମନ ତିଳେମାତ୍ର ବିଚଳିତ ହୋଇଥିଲେ ମଧ୍ୟ, ସେ ତାହାଙ୍କୁ ନିଜର ବଶୀଭୂତ କରାଇ ଦୃଢ଼ ସଂଯମର ପରାକାଷ୍ଠା ପ୍ରଦର୍ଶନ କରିଯାଇଅଛନ୍ତି ।" ବିକାର ହେତୌ ସତି ବିକ୍ରିୟନ୍ତେ ଯେଷାଂ ନ ଚେତାଂସି ତ ଏବ ଧୀରା ।"

ପ୍ରକୃତ ପକ୍ଷରେ ଅରକ୍ଷିତ ଦାସ ସ୍ୱୀୟ ଜୀବନର ଗତିପଥ ବଦଳାଇ ସଂଯମ ଶିକ୍ଷାର ପ୍ରଥମାବସ୍ଥାରେ ଯେଉଁ ସଂଯମିତାର ଆଦର୍ଶ ଏଠାରେ ଦେଖାଇ ଯାଇଅଛନ୍ତି ତାହା ହିଁ ତାହାଙ୍କ ଜୀବନର କାର୍ଯ୍ୟାବଳୀକୁ ସମାଜ ନିକଟରେ ଅଲୌକିକ, ଉଦ୍ଭାସିତ ଓ ଅଦ୍ଭୁତ କରୁଅଛି । ଏଥିଯୋଗୁଁ ସେ ଅଜ ମହାପୁରୁଷ ରୂପରେ ସ୍ଥାନେ ସ୍ଥାନେ ପୂଜିତ ହେଉଅଛନ୍ତି ।

ପୁରୀ ପଥରେ ଯାଉଁ ଯାଉଁ ଅନେକ ଗ୍ରାମରେ ତାଙ୍କୁ ଅନେକ ଦିନ ଉପବାସରେ କଟାଇବାକୁ ହୋଇଥିଲା । "ଭିକ୍ଷା ନ କରିବା" ତାଙ୍କର ଗୋଟିଏ ଧର୍ମମତ ପ୍ରାୟ ବୋଧହୁଏ । ଅନେକ ଦିନ ଉପବାସରେ ଅନାହାରରେ ଅତିବାହିତ କରି ସେ ନାନାବିଧ ଦୁଃଖ ଯନ୍ତ୍ରଣା ଅକାତରରେ ସହ୍ୟ କରିଅଛନ୍ତି । ତଥାପି ସେ ତାହାଙ୍କର

ସେହି ଧର୍ମମତରୁ ( ଭିକ୍ଷା ନ ମାଗିବା ) କଦାପି ବିଚଳିତ ହୋଇନାହାନ୍ତି । ଏହିପରି ଅନାହାରରେ ତାହାଙ୍କୁ କ୍ଳିଷ୍ଟପିଷ୍ଟ ହେବାର ଦେଖି ଯଦି କେହି ଦାତା ଅଯାଚିତ ଭାବରେ ଯାହାକିଛି ପ୍ରଦାନ କରେ, ତାହା ସେ ଅମ୍ଳାନବଦନରେ ଗ୍ରହଣ କରନ୍ତି । ସେଥିପାଇଁ ସେ କହିଅଛନ୍ତି "ଡାକି ବୋଇଲେ ଦେଲେ ଖାଇ, ମାଗିତ ମୋତେ ନ ଆସଇ ।" ସେ ନିଜ ଜୀବନରେ ଏହି ମତଟିକୁ ବ୍ରତରୂପରେ ଗ୍ରହଣ କରି ଆସିଅଛନ୍ତି ଏବଂ ନାନାବିଧ କଷ୍ଟ ସହ୍ୟ କଲେ ମଧ୍ୟ ସେଥିରୁ କଦାପି ଭ୍ରଷ୍ଟ ହୋଇନାହାନ୍ତି । ତାହାପରେ ସେ ଖଲିକୋଟ ଗ୍ରାମଦେଇ ବାଣପୁରରେ ପହଞ୍ଚିଲେ । ସେଠାରେ ସେ ଜଣେ କୈବର୍ତ୍ତ ଘରେ ଭିକ୍ଷଣି କରି ପୂର୍ବବାର ଅପେକ୍ଷା ବିଶେଷଭାବରେ ନିଜକୁ ଜାତ୍ୟଭିମାନ ଜନିତ ଘୃଣା-ବର୍ଜନ କରିଥିବାର ଜ୍ୱଳନ୍ତ ନିଦର୍ଶନ ଦେଇଯାଇଅଛନ୍ତି । ସେଠାରୁ ସେ ଯାଇଁ ମୋରଣଠାରେ ଗୋଟିଏ ରାତ୍ର ଅନାହାରରେ ଗୋଟିଏ ମଣ୍ଡପରେ କଟାଇଲେ ।

ପରଦିନ ପ୍ରାତଃକାଳରେ ଜଣେ ବ୍ରାହ୍ମଣ ତାହାଙ୍କୁ ନିମନ୍ତ୍ରଣ କରିନେଇ ଭୋଜନ କରାଇଥିଲେ । ସେଠାରୁ ସେ ଆସି ନିଜର ଏକମାତ୍ର ଲକ୍ଷ୍ୟ ପୁରୀ ଦେଉଳ ଦର୍ଶନରେ ତାଙ୍କର ସମସ୍ତ କ୍ଳେଶ, ଚିନ୍ତା ଓ କ୍ଳାନ୍ତି ବିଦୂରିତ କରିଥିଲେ । ସେଥିପାଇଁ କାଳିଦାସ କହିଅଛନ୍ତି "କ୍ଳେଶଃ ଫଳେନହି ପୁନର୍ନବତାଂ ବିଧତ୍ତେ ।" ପୁରୀରେ ପ୍ରବେଶ କଲାକ୍ଷଣି ଜଗନ୍ନାଥ ଦର୍ଶନ ଲାଳସାରେ ନିଜର ସମସ୍ତ କ୍ଳେଶ ବିସ୍ମୃତ ହୋଇ ଦ୍ରୁତଗତିରେ ମନ୍ଦିର ଅଭିମୁଖରେ ଧାବିତ ହେଲେ ।" "ଗ୍ରଣ୍ଠି ମୁଁ ଗଲି ଖରତରେ, ମିଳିଲି ସିଂହଦ୍ୱାରରେ । ସେ ସମୟରେ ସିଂହଦ୍ୱାର (ପଶ୍ଚିମଦ୍ୱାର) ଓ ଅଠର ନଳା ନିକଟରେ ମାସୁଲ ନେଇ ମନ୍ଦିରକୁ ପଠାଉଥିବା ସକାଶେ ପ୍ରହରୀ ନିଯୁକ୍ତ ଥିଲେ । ସେମାନେ ମାସୁଲ ନ ପାଇବାରୁ ଅରକ୍ଷିତ ଦାସଙ୍କୁ ଭିଡ଼ି

ଦେଇଥିଲେ । ସେଠାରେ ତାଙ୍କ ହୃଦୟର ସେହି ଉଦ୍ଦାମ ଉତ୍କଣ୍ଠିତ ପ୍ରବୃତ୍ତି ନିବାରିତ ହେବାରୁ ଓ ଚିରପୋଷିତ ଆଶା ଭଗ୍ନ ହେବାରୁ ସେ ନୈରାଶ୍ୟ ଜର୍ଜ୍ଜରିତ ହୃଦୟରେ ସେଠାରୁ ଅଠରନଳା ନିକଟକୁ ଯାଇଥିଲେ । ସେଠାରେ ମଧ୍ୟ ମାସୁଲ ନ ଦେଇପାରିବାରୁ ତାହାଙ୍କୁ ସେହି ଦଶା ଭୋଗ କରିବାକୁ ପଡ଼ିଥିଲା । ସେଠାରେ ଅନ୍ନ ଜଳ ସ୍ପର୍ଶ ନ କରି ବକୁଳ ମୂଳରେ ଦ ୫ ନ ଅତିବାହିତ କରିଥିଲେ । ତଥାପି ଜଗନ୍ନାଥ ଦର୍ଶନ କରିପାରି ନ ଥିଲେ । ତାହାଙ୍କୁ 'ପୋଖରୀ ପାଣି' ଦେଖାଇବାରୁ ସେ ନିକଟବର୍ତ୍ତୀ 'ନଟୀକଲ୍ ବାର୍' ନାମକ ନଡ଼ିଆ ବଗିଚାରେ 'ପୋଖରୀ ପାଣି' ବସି 'ଶାମୁକ' ନାମକ ପୋଖରୀରେ ଶୌଚାଦି ସମାପନ କରିଥିଲେ । କିନ୍ତୁ ପୋଖରୀରୁ ଉଠିଲାବେଳେ ବଗିଚାର ପ୍ରହରୀ ତାଙ୍କୁ ଚୋର ବୋଲି ଧରି ଅନେକ ପ୍ରହାର କଲାବେଳେ ସେ କହୁଅଛନ୍ତି । "ଏବେ ଉଣେଇଶ ବରଷ, ବିଧାତା ମୋତେ କଲା ନାଶ । ବନ୍ଧୁ କୁଟୁମ୍ବ ନ ଦେଖିଲି, ମାଡ଼ ଖାଇକି ମୁହିଁ ମଲି । ଘରେ ମୁଁ ଥିଲେ କେ ମାରନ୍ତା, ଏକଥା ବିଚାରିଲା ବିଧାତା ।" ପ୍ରହରୀ କେବଳ ପ୍ରହାରରେ ଶାନ୍ତ ନ ହୋଇ ତାହାଙ୍କୁ ନିଜର ସ୍ୱାମୀ ନିକଟକୁ ଘୋସାରି ନେଇ ଯାଉଥିବା ସମୟରେ ଜଣେ ବୃଦ୍ଧା ବ୍ରାହ୍ମଣୀ ତାହାଙ୍କର ଦଶା ଦେଖି ବିଚଳିତ ହୋଇ "ପାଅଁଦିନ ହେଲା ତାହାଙ୍କର ଉପବାସ" ପ୍ରଭୃତି ସମସ୍ତ ପ୍ରକୃତ ଘଟଣା କହିବାରୁ ପ୍ରହରୀ ରାଜଦଣ୍ଡ ଭୟରେ ତାହାଙ୍କୁ ଛାଡ଼ିଦେଇଥିଲା ।

ସେ ସେଠାରେ ଜଗନ୍ନାଥ ଦର୍ଶନରେ ନିରାଶ ହୋଇ ସତ୍ୟବାଦୀ ଅଭିମୁଖେ ଯାତ୍ରା କରିଥିଲେ । କିନ୍ତୁ ଈଶ୍ୱରଙ୍କର ମାୟା ଅନନ୍ତ, ମହାମହିମଙ୍କର ମାୟା କଳନା କରିବା ମାନବ ପକ୍ଷରେ ସମ୍ଭବପର ନୁହେଁ । ସେ ଯେ କେତେବେଳେ କି ଭାବରେ

ମନୁଷ୍ୟଙ୍କୁ ଏହି ସଂସାର-ପରୀକ୍ଷା କ୍ଷେତ୍ରରେ ପରୀକ୍ଷିତ କରୁଅଛନ୍ତି ତାହା ମାନବ-ଜ୍ଞାନର ଅଗୋଚର । ଅଭିଷିତ ଦାସ ପଥଭ୍ରଷ୍ଟ ହୋଇ ଇତସ୍ତତଃ ଅନାହାରରେ ୭ ଦିନ କଟାଇ ଅଲକ୍ଷିତ ଓ ଅଚଳିତ ଭାବରେ ପୁନର୍ବାର ଅଠରନଳା ନିକଟସ୍ଥ ବୃକ୍ଷମୂଳରେ ଉପନୀତ ହୋଇଥିଲେ । ଏହିଥର କୃପାସାଗର ଜଗନ୍ନାଥଙ୍କର ତାହାଙ୍କଠାରେ କୃପା ହେଲାପରି ବୋଧହେଲା । ପ୍ରହରୀମାନେ ତାଙ୍କପ୍ରତି ସଦୟ ହୋଇ ତାଙ୍କୁ ମନ୍ଦିର ଭିତରକୁ ଯିବାକୁ ଅନୁମତି ଦେଇଥିଲେ । କିନ୍ତୁ ଦୁଃଖର ବିଷୟ ଯେ ମନୁଷ୍ୟ ଯାହା ଭାବେ, ତାହା ପ୍ରକୃତ ପକ୍ଷରେ କାର୍ଯ୍ୟରେ ପରିଣତ କରିପାରେ ନାହିଁ (Man proposes God disposes ।" ନାନାବିଧ ଯନ୍ତ୍ରଣା ସହ୍ୟକରି ଅନାହାରରେ ଦି ୭ ନ ଅତିବାହିତ କଲାପରେ ପ୍ରହରୀମାନଙ୍କର ଅନୁକମ୍ପା ସହିତ ପ୍ରବେଶର ଅନୁମତି ଲାଭକରି 'ଅରୁଣସ୍ତମ୍ଭ' ପର୍ଯ୍ୟନ୍ତ ଯାଇପାରିଥିଲେ । ମନ୍ଦିରରେ ଜଗନ୍ନାଥ ଦର୍ଶନ ସକାଶେ ଅନବରତ ଲୋକ ଗହଳି ହେଉଥିଲା; ସବଳ ଲୋକ ପକ୍ଷରେ ମଧ୍ୟ ସେହିଁ ଜନତା ଭେଦକରି ଜଗନ୍ନାଥଙ୍କର ଦର୍ଶନ ଲାଭକରିବା ଅତି ଦୁରୂହ ବ୍ୟାପାର, ସେପରି କ୍ଷେତ୍ରରେ ଦି ୭ ନ ହେଲା ଅନାହାରରେ ଜୀର୍ଣ୍ଣ, ଶୀର୍ଣ୍ଣ, ଦୁର୍ବଳ ଲୋକର କଥାତ ଭାବିବାର ନୁହେଁ । ଅଭିଷିତ ଦାସ ରାଜକୁମାର, ସେ ସମସ୍ତ ରାଜଭୋଗ ତ୍ୟାଗକରି ଗ୍ରାମ ଅରଣ୍ୟରେ ଅନାହାର ଓ ସ୍ୱଳ୍ପାହାରରେ ଦିନ-ଯାପନ କରି କ୍ଷୀଣ ଓ ଦୁର୍ବଳ ଥିଲେ । ବର୍ତ୍ତମାନ ମଧ୍ୟ ଦି ୭ ନ ହୋଇଗଲାଣି, ଅନ୍ନ ସହିତ ସାକ୍ଷାତ ନାହିଁ । ଏପରି ଅବସ୍ଥାରେ ସେ ସେହି ପ୍ରହରୀର ଘନ ଘନ ବେତାଘାତ ମୁଖରିତ ଜନତା ଭେଦ କରିବାକୁ ପ୍ରୟାସୀନହୋଇ 'ଅରୁଣସ୍ତମ୍ଭ' ନିକଟରେ ଜଗନ୍ନାଥଙ୍କ ଧାରଣାରେ ଆଉ ପାଞ୍ଚଦିନ ଅନାହାରରେ କଟାଇଥିଲେ । ତଥାପି

କୃପାନିଧିଙ୍କର ତାଙ୍କଠାରେ କୃପା ଲେଶମାତ୍ର ହେଲା ନାହିଁ। ଅନାହାରରେ ଏକମାତ୍ର ଜଗନ୍ନାଥଙ୍କ ଧାରଣା ଓ ନିଷ୍ଠାରେ ଦିନ ୧୨ ଦିନ ଯାପନ କରି, ପ୍ରଭୁଙ୍କ ଦର୍ଶନ ପାଇ ନ ପାରି ନିରାଶ ହୃଦୟକୁ ଆଶାର ବାଣୀ ଶୁଣାଇଥିଲେ—"ହୋଇଲା ଏଥି କାର୍ଯ୍ୟ ନାହିଁ ବ୍ରହ୍ମାଣ୍ଡେ ପୁରିଅଛୁ ସେହି।" ଲୋକେ ଆଶାଦ୍ୱାରା ପରିଚାଳିତ ହୋଇ ସଦ୍‌ସତ ବିଚାର ନ କରି ସ୍ୱୀୟ ଉଦ୍ଦେଶ୍ୟ ସାଧନରେ ତତ୍‌ପର ହୁଅନ୍ତି। କିନ୍ତୁ ସେହି ଆଶାସିକ୍ତ ହୃଦୟରେ ନିରାଶାର ଉତ୍ତପ୍ତ କିରଣ ବୃଷ୍ଟି ହୋଇ ଆଶାବାରି ଶୋଷଣ କଲାପରେ ସେମାନେ ନିଜର ବିବେକ ପ୍ରଣୋଦିତ ହୋଇ ସୂକ୍ଷ୍ମରୁ ସୂକ୍ଷ୍ମତମ ଉପାୟମାନ ଅବଲମ୍ବନ ଓ ଉଦ୍ଭାବନ କରନ୍ତି।

ସେହିପରି ଅରକ୍ଷିତ ଦାସ ଯେତେବେଳେ ଜଗନ୍ନାଥ ଦର୍ଶନ ଲାଭରେ ଏକାନ୍ତ ହତାଶ ହୋଇଥିଲେ, ସେତେବେଳେ ତାଙ୍କର ହୃତ୍‌ପିଣ୍ଡସ୍ଥ ବିବେକ ରୁଷ୍ଟହୋଇ ଗମ୍ଭୀର ନିନାଦରେ "ବ୍ରହ୍ମାଣ୍ଡେ ପୁରିଅଛୁ ସେହି" ଏହି ଅମୃତବାରି ଶୁଷ୍କ ହୃଦୟରେ ବର୍ଷଣ କରିଥିଲା। ଜଗତର ସ୍ୱାମୀ ଜଗନ୍ନାଥ ସର୍ବତ୍ର ବିରାଜିତ' ଏହି ନବଭାବରେ ତାଙ୍କର ହୃଦୟକନ୍ଦର ପ୍ରଫୁଲ୍ଲିତ ଏବଂ ଶରୀର କଣ୍ଟକିତ ହୋଇଥିଲା। ନୂତନ ଧର୍ମ ଭାବରେ ଅନୁପ୍ରାଣିତ ହୋଇ ସେ ସେହିକ୍ଷଣି ଜଗନ୍ନାଥଙ୍କ ମନ୍ଦିର ଛାଡ଼ି ଚାଲିଗଲେ। ଯାଉଁ ଯାଉଁ ପଥରେ ଜଣେ ବ୍ରାହ୍ମଣ ତାଙ୍କ ଦଶା ଦେଖି କୃପାପରବଶ ହୋଇ ତାହାଙ୍କୁ ଅଦର ସହିତ ଭୋଜନ କରାଇଥିଲା। ସେଠାରୁ ଯାଇଁ ଗୋଟିଏ ଅମ୍ବ ତୋଟାରେ ପହଞ୍ଚିଲେ। ସେଠାରେ କେତେଜଣ ବ୍ରାହ୍ମଣ ଶିବ ମନ୍ଦିରରେ ଅମ୍ବ ଭୋଗକରି ସମସ୍ତ ଭକ୍ଷଣ କଲେ। କିନ୍ତୁ ଅରକ୍ଷିତ ଦାସଙ୍କୁ କିଛି ଦେଲେ ନାହିଁ। ସେଠାରେ

ଅରକ୍ଷିତ ଦାସଙ୍କୁ ଅନାହାରରେ ଗୃହରେ କଟାଇବାକୁ ହୋଇଥିଲା । ବ୍ରାହ୍ମଣ ମାନଙ୍କର ଏହି ସ୍ୱାର୍ଥପରତା ଦେଖି ତାଙ୍କ ମନରେ ଅତ୍ୟନ୍ତ କଷ୍ଟ ହୋଇଥିଲା । ତହୁଁ ଅରକ୍ଷିତ ସେଠାରୁ ଯାଉଁ ଯାଉଁ ବାଟରେ ବ୍ରାହ୍ମଣୀଟିଏ ତାଙ୍କୁ ଖଣ୍ଡିଏ ଅମ୍ଳ ଯାଚି ଦେଇଥିଲା । ଅରକ୍ଷିତ ଦାସ ସାଦରରେ ତାହା ଗ୍ରହଣ କରି ସ୍ତ୍ରୀ ଜାତିର ଦୟାଳୁତାକୁ ଭୂରି ଭୂରି ପ୍ରଶଂସା କରିଅଛନ୍ତି । ସେଠାରୁ ଆସି ଖୋରଧାରେ ପହୁଞ୍ଚିଥିଲେ । ଗ୍ରାମବାସୀମାନେ ତାହାଙ୍କୁ 'ପାଗଳା ବାୟା' ଭାବି ନାନାଭାବରେ ଉତ୍ପୀଡ଼ନ କରିଥିଲେ । ବିଶେଷତଃ ବାଳକମାନଙ୍କ ଠାରୁ ସେଥିପାଇଁ ନାନାପ୍ରକାର ଉତ୍ପୀଡ଼ନ ତାହାଙ୍କୁ ସହ୍ୟକରିବାକୁ ପଡ଼ିଥିଲା । ସୁତରାଂ ସେ ଗ୍ରାମ ବାଟ ଛାଡ଼ି ଅରଣ୍ୟପଥରେ ବୁଲୁଥିଲେ । ସେଥିସକାଶେ ସେ କହିଅଛନ୍ତି—'ଗ୍ରାମରେ ମୋର ଲଭ ନାହିଁ; ବାଟ ଭାଙ୍ଗିଣ ଯିବି ମୁହିଁ ।'' ଖୋରଧାରୁ ଅରଣ୍ୟ ପଥରେ ନାନା ପାହାଡ଼ ବୁଲି ବୁଲି ଅବଶେଷରେ ଖଣ୍ଡଗିରିର ପହୁଞ୍ଚିଥିଲେ । ବୌଦ୍ଧ କୀର୍ତ୍ତିରାଜି ଶୋଭିତ ଖଣ୍ଡଗିରିର ଗୁହାମାନ ଅରକ୍ଷିତ ଦାସଙ୍କର ମନକୁ ଆକୃଷ୍ଟ ଓ ଆନନ୍ଦିତ କରିଥିଲା । ଅନେକ ଦିନରୁ ବୌଦ୍ଧ ସନ୍ନ୍ୟାସୀଙ୍କର ପରିତ୍ୟକ୍ତ ତୃଣଲତାଚ୍ଛାଦିତ ଗୁମ୍ଫାମାନ ନିଜେ ପରିଷ୍କୃତ କରି ହାତୀ ଗୁମ୍ଫାରେ ନିଜର ଅଧିକାଂଶ ସମୟ ଅତିବାହିତ କରିଥିଲେ । ଏହି ଖଣ୍ଡଗିରିରେ ବାସ କଲାବେଳେ ଅରକ୍ଷିତ ଦାସ "ମହୀମଣ୍ଡଳ ଗୀତା"ର ୩୫ ଅଧ୍ୟାୟ ଲେଖିଥିଲେ । ସେ ଏହିଠାରେ ନିଜ ଜୀବନର ଚରମ ଲକ୍ଷ୍ୟ ଈଶ୍ୱରଭକ୍ତି ଓ ଅଷ୍ଟାଙ୍ଗ ଯୋଗ ସାଧନାରେ ସିଦ୍ଧିଲାଭ କରିଥିଲେ । ଖଣ୍ଡଗିରିର ରମଣୀୟତା ବୌଦ୍ଧ କୀର୍ତ୍ତିରାଜିର ସାକ୍ଷ୍ୟଦାତା ଗୁମ୍ଫାମାନଦ୍ୱାରା ଏପରିଭାବରେ ସେ ଆକୃଷ୍ଟ ହୋଇଥିଲେ ଯେ ତାହାକୁ ତ୍ୟାଗ କରିଯିବା ତାଙ୍କ ପକ୍ଷରେ ଏକାନ୍ତ ଅସମ୍ଭବ ପ୍ରାୟ ବୋଧ ହୋଇଥିଲା ।

ଖଣ୍ଡଗିରିକୁ ସମୟ ସମୟରେ ଦର୍ଶନାର୍ଥେ ଯାତ୍ରୀ ଯାଉଥିବାରୁ ତାଙ୍କର ଯୋଗ ଓ ଈଶ୍ୱର ଭକ୍ତି ସାଧନାରେ ଏହା ପ୍ରତିବନ୍ଧକ ହୋଇଥିଲା । ସୁତରାଂ ଲେଖକ ଖଣ୍ଡଗିରିର ମାଧୁରୀ ତ୍ୟାଗକରି ଯିବାରେ ନିଜକୁ ଅକ୍ଷମ ଭାବି ଓ ଖଣ୍ଡଗିରି ତ୍ୟାଗ ଶ୍ରେୟସ୍କର ମଣି ବିକଳ ଭାବରେ ଈଶ୍ୱରଙ୍କର ସାହାଯ୍ୟ ପ୍ରାର୍ଥନା କରୁଅଛନ୍ତି ।

'ଖଣ୍ଡଗିରିରେ ମୁଁ ରହିଲି ଭକତି ସାଧି ନ ପାରିଲି ।
ଖଣ୍ଡଗିରିକୁ ମୋତେ ନିଅ ଭକତି ଯୋଗ ଯେ ସଧାଅ ।
ଏଁାଡ଼ ପର୍ବତରେ ବୁଲାଅ ମୋ ମନ ଶାନ୍ତ ଯେ କରାଅ ।

ଭକ୍ତି ଓ ଯୋଗ ସାଧନାରେ ଖଣ୍ଡଗିରି ପ୍ରତିବନ୍ଧକ ହେବାରୁ ତାହାକୁ ତ୍ୟାଗକରି ଅନ୍ୟ ପାହାଡ଼କୁ ଯିବାର ପ୍ରବଳ ଆକାଂକ୍ଷା ମନରେ ଜାତ ହୋଇଥିଲା । ସେହି ଆକାଂକ୍ଷା ପୂରଣ କରିବା ନିମିତ୍ତ ସେ ବାରମ୍ବାର ଈଶ୍ୱରଙ୍କର ସହାୟତା ଲୋଡ଼ିଛନ୍ତି । ଯେଉଁ ବ୍ୟକ୍ତି ଷୋଡ଼ଶ ବୟସରେ ସଂସାରର ସମସ୍ତ ମାୟା ମମତା ତ୍ୟାଗ କରି ବନବାସରୂପ କଠୋର ବ୍ରତରେ ବ୍ରତୀ ହୋଇଅଛନ୍ତି, ତାଙ୍କ ପକ୍ଷରେ ସେ ଏହି ସାମାନ୍ୟ ନୟନେନ୍ଦ୍ରିୟ ତୃପ୍ତିକର ଖଣ୍ଡଗିରି ବନ୍ଧନ ସ୍ୱରୂପ ହେବ ଏହା ସମ୍ଭବପର ନୁହେଁ । ସର୍ବଶେଷରେ ସେ ନିଜର ଆହ୍ଲାଦଦାୟକ, ଏକମାତ୍ର ବନ୍ଧନ ସ୍ୱରୂପ ନିସର୍ଗସୁନ୍ଦର ଖଣ୍ଡଗିରିର ପ୍ରଲୋଭନରାଶି ଦୂରକୁ ନିକ୍ଷେପ କରି ବନବନାନ୍ତରରେ ନିଜର ଲକ୍ଷ୍ୟ ସାଧନ ସକାଶେ ପୁନର୍ବାର ନିର୍ଗତ ହୋଇଥିଲେ । ସେ ବାଲ୍ୟରୁ ଜନତାପ୍ରିୟ ନ ଥିଲେ ଏବଂ ଗ୍ରାମବାସୀମାନେ 'ବାୟା' ବୋଲି ପ୍ରହାର କରୁଥିବା ଭୟରେ ବନପଥ ଅବଲମ୍ବନ କରି ବୁଲୁଥିଲେ । ଖଣ୍ଡଗିରିରୁ ଯାଇ ମହାନଦୀ କୂଳସ୍ଥିତ ନୀଳମାଧବଙ୍କ ନିକଟରେ ଅନେକ ଦିନ ଯାପନ କରିଥିଲେ ।

ମହାନଦୀ କୂଳରେ ନୀଳମାଧବ ଗୋଟିଏ ଅତି ରମଣୀୟ ସ୍ଥାନ। ଅରକ୍ଷିତ ଦାସ ପ୍ରକୃତିର ଏହି ରମଣୀୟତା ତ୍ୟାଗ କରି ଯାଇ ନ ପାରି ସେଠାରେ କିଛିଦିନ କଟାଇଥିଲେ । ସେଠାରୁ ଯାଇଁ ବେଲପଡ଼ା ଗ୍ରାମରେ ଦଧିବାମନ ଦେଖିଥିଲେ । ତାଙ୍କର ନାସ୍ତିମିତ ରୂପେ ଚୂଳା ଖଞ୍ଜା ନ ଥିବାର ଦେଖି କହିଅଛନ୍ତି—

"ନୀଳମାଧବ ଯେ ଅଛନ୍ତି, କେତେ ଭୋଗଟି ପାଉଛନ୍ତି ।
ଏଥି ଦଧିବାମନ ପୁଣ, ସେହିରେ ଗୃହଜନଙ୍କୁ ଭଜନ ।
ସେ ପ୍ରଭୁ ପଡ଼ି ଦାତା ହୋଇ, ଯାହାକୁ ଯେମନ୍ତ ଖଞ୍ଜାଇ ।
ତାହାକୁ ଗଠ ଫଳଙ୍କ ହିଁ, ତାହାକୁ କଡରି ନ ଦଅଇ ।
ଏମନ୍ତେ ସେ ପ୍ରଭୁ ଭିଆଣ ଯାହାକୁ ଯେମନ୍ତ ଖଞ୍ଜାଣ ।

ସେଠାରୁ ମହାନଦୀ କୂଳରେ ମଣିଭଦ୍ରା ପାହାଡ଼ରେ ପହୁଞ୍ଚିଲେ । ପର୍ବତର ଅତି ଉଚ୍ଚତା ହେତୁରୁ ସେଠାରେ ଜଳର ଅଭାବ ଅନୁଭବ କରି ତାହା ତ୍ୟାଗ କରି ବଦ୍ରୀଶ୍ବରରେ ଯାଇଁ ପହୁଞ୍ଚିଲେ । ସେଠାରୁ ବାଙ୍କୀ ଯାଇ ହଳଦିଆ ପର୍ବତରେ କେତେ ଦିନ ରହିଥିଲେ । ସେଠାରୁ ଯାଇ ଡମପଡ଼ା ପର୍ବତରେ କିଛିଦିନ ରହି ମହାନଦୀ ତୀରରେ ସମୁଦ୍ର ଅଭିମୁଖରେ ଯାତ୍ରା କରିଥିଲେ ।

ସମୁଦ୍ରକୂଳରେ ଦୀର୍ଘ ଦିନ ରହି ତାହାର କ୍ଷାର ପାଣି ପିଇ ଅତ୍ୟନ୍ତ କଷ୍ଟ ଅନୁଭବ କରି କହିଅଛନ୍ତି—"ବ୍ରାହ୍ମଣେ ସମୁଦ୍ରକୁ କୋପେ, ଶାପ ଦେଲେ ବହି ମାହାଡୋପେ । ତାରି ପାଣିଟି ହୁଅ ତୁହି, ତୋତେଟି ନ ଭକ୍ଷନ୍ତୁ କେହି ।" ସେଠାରୁ ଆସି ହରିହରପୁର ଶିବ ମନ୍ଦିରରେ ରହିଲେ କିନ୍ତୁ ସେଠାରେ କିଛି ଖାଇବାକୁ ନ ପାଇ ଲେଖିଛନ୍ତି—"ଏତ ମହାଦେବ ନୁହଇ, ବୋଇଲି ପଥର ଅଟଇ । ଯେବେ ଦେବତା ହୋଇଥାନ୍ତା, ଅବଶ୍ୟ ଖାଇବାକୁ

ଦ୍ୟାନ୍ତା ।” ସେଠାରୁ ସାଇଁ ପାରେଶ୍ୱର ନାମକ ଶିବ ମନ୍ଦିରରେ ଏକବର୍ଷ କଟାଇଥିଲେ । ତଦ୍ଧ୍ୱଁଉପରୁ ପାରଦ୍ୱିପ (କୁଜଙ୍ଗ) ଯାଇଥିଲେ, କିନ୍ତୁ ରାଜା ସେଠାରେ ତାଙ୍କୁ 'ବାଯ୍ୟା' ବୋଲି ହତାଦର ଓ ଉତ୍ପୀଡ଼ିତ କରିବାରୁ ସେ ଚାଲିଯାଇଥିଲେ । ସେଠାରେ ଅନେକ ଦିନ ରହି ଯଜୁପୁର ଦେଇ କେନ୍ଦ୍ରାପଡ଼ା ଆସିଥିଲେ । କେନ୍ଦ୍ରାପଡ଼ାରୁ ଗୋଟିଏ ନାବରେ ଗୋବରୀ ନଦୀରେ ଆସୁ ଆସୁ ଲଳିତଗିରି ସନ୍ନିକଟସ୍ଥ ଓଡ଼ାଶୁଣି ପାହାଡ଼ରେ ଗୋଟିଏ ଗୁମ୍ଫା ଦେଖି ସେଠାରେ ରହିଥିଲେ । ଏ ସ୍ଥାନଟି ଅତି ରମଣୀୟ, ଏହାର ତଟ ଦେଶରେ ଗୋବରୀ ନଦୀ ପ୍ରବାହିତା । ଏହାର ଅତି ସନ୍ନିକଟରେ ବୌଦ୍ଧକୀର୍ତ୍ତି ଖୋଦିତ ଲଳିତଗିରି ଓ ଲଣ୍ଡିପାହାଡ଼ ନାମରେ ଦୁଇଟି ପାହାଡ଼ ବିରାଜିତ । ଏହା ଘୋର ଅରଣ୍ୟ ପୂର୍ଣ୍ଣ ନ ଥିବାରୁ ଅରକ୍ଷିତ ଦାସ ଏହି ସ୍ଥାନରେ ନିଜର ଅନ୍ତିମ ଜୀବନଯାପନ କରିବାକୁ ମନସ୍ଥ କରିଥିଲେ । ଅରକ୍ଷିତ ଦାସ ଏହି ସ୍ଥାନରେ ମାଘମାସ କୃଷ୍ଣ ଏକାଦଶୀ ଦିନ ଗୋଟିଏ ମେଳା କରୁଥିଲେ ଏବଂ ନିଜର ଅନ୍ତିମ ଶଯ୍ୟା ବା ସମାଧି ସକାଶେ ଗୋଟିଏ ଇଷ୍ଟକ ନିର୍ମିତ ଗୃହନିର୍ମାଣ କରାଇ ୧୨୭୫ ସାଲ ମାଘ କୃଷ୍ଣ ଏକାଦଶୀ ଦିନ ସମାଧିସ୍ଥ ହୋଇ ଇହଲୀଳା ସମ୍ବରଣ କରିଥିଲେ । ଅଦ୍ୟାପି ସେହି ପରଲୋକଗତ ମହାତ୍ମାଙ୍କର ସ୍ମୃତିରକ୍ଷା ନିମିତ୍ତ ମାଘ କୃଷ୍ଣ ଏକାଦଶୀ ଦିନ ତାହାଙ୍କର ଶିଷ୍ୟ-ପ୍ରଶିଷ୍ୟମାନଙ୍କ ଦ୍ୱାରା ଏହି ସ୍ଥାନରେ ମେଳା ଓ ଭୋଜି ଅନୁଷ୍ଠିତ ହୁଏ । ତାହାଙ୍କର ଶିଷ୍ୟ ରାମଚନ୍ଦ୍ର ଦାସ ଏହି ସ୍ଥାନରେ ଆଉ ଦୁଇଟି ଗୁମ୍ଫା ନିର୍ମାଣ କରିଅଛନ୍ତି ।

●

# ଭକ୍ତକବି ଅଭିମନ୍ୟୁ ସାମନ୍ତସିଂହାର

(୧୭୫୭-୧୮୦୬)

( ୧ )

୧୭୫୧ ଓ ୧୮୦୩ ମସିହା ଓଡ଼ିଶା ଇତିହାସର ଅବିସ୍ମରଣୀୟ । ଏ ଉଭୟ ବର୍ଷରେ ଓଡ଼ିଶାର ଭାଗ୍ୟ ଦୁଇଥର ଗୋଟିଏ ହାତରୁ ଅନ୍ୟ ଗୋଟିଏ ହାତକୁ ଚାଲିଯାଇ ଥିବାର ଆମେ ଦେଖିବାକୁ ପାଉଁ । ଅଭିମନ୍ୟୁଙ୍କ ଆବିର୍ଭାବ ଓ ତିରୋଧାନ ପ୍ରାୟ ଏଇ ଦୁଇ ସାଲ ଭିତରେ ଅବଧି । ସମୁଦାୟ ଅଷ୍ଟାଦଶ ଶତାବ୍ଦୀ ଓଡ଼ିଆ କାବ୍ୟ ସାହିତ୍ୟର ଏକ ସ୍ୱର୍ଣ୍ଣ ଯୁଗ । ଓଡ଼ିଆ ପ୍ରାଚୀନ କାବ୍ୟାକାଶରେ ଯେଉଁ କେତେଜଣ କବି ସାହିତ୍ୟର ବିଜୟ ପତାକା ଉତ୍ତୋଳନ କରିଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଲେଖନୀ ଚାଳନା କରିଛନ୍ତି । ମରହଟ୍ଟାମାନଙ୍କ ଅମାପ ଅପଶାସନରେ ଯେତେବେଳେ ଏ ଦେଶର

ଜନଜୀବନ ଏକ ଅଶାନ୍ତ ବାୟୁମଣ୍ଡଳ ଭିତରେ ଗତ କରୁଥିଲା, ମନେହୁଏ, ସେତେବେଳେ ଏଇ କବିମାନେ ସେମାନଙ୍କ ଅନବଦ୍ୟ ବୀଣା ଝଙ୍କାରରେ ବାଣୀ ଦେବୀଙ୍କୁ ସମୁଚିତ ଅର୍ଚ୍ଚନା କରି ଏ ଦେଶର ଜୀବନକୁ ରସସିକ୍ତ କରି ରଖିବାକୁ କମ୍ ସାଧନା କରି ନାହାନ୍ତି । ଭକ୍ତକବି ସାମନ୍ତସିଂହାର ସେଇ କବିପୁଙ୍ଗବମାନଙ୍କ ମଧ୍ୟରେ କେବଳ ଅନ୍ୟତମ ନୁହଁନ୍ତି, ପ୍ରଧାନତମ କହିଲେ ଅତ୍ୟୁକ୍ତି ହବନାହିଁ ।

ଯାଜପୁର ସବ୍‌ଡିଭିଜନ ଅନ୍ତର୍ଗତ ବାଲିଆ ଅଭିମନ୍ୟୁଙ୍କ ଜନ୍ମ ସ୍ଥାନ । ପ୍ରାକୃତିକ ଶୋଭା-ସଂପଦରେ ମହୀୟାନ ଏଇ ସ୍ଥାନରେ ସେ ନିଜର ସାରା ଜୀବନ ଅତିବାହିତ କରିଥିଲେ । ତାଙ୍କର ପିତା ଇନ୍ଦ୍ରଜିତଙ୍କ ବଳବିକ୍ରମ ଅସୀମ ଥିଲା । 'ବାଘ ଗୀତ'ରେ ଅଭିମନ୍ୟୁ ଲେଖିଛନ୍ତି—

ଇନ୍ଦ୍ରଜିତ ସାମନ୍ତ ନାମ ସତ
ବାଘ ସ୍ଥିର ତାକୁ କେତେ ମାଦକ ?
ଯାହାଙ୍କ ଧନୁ ମେଟେ ଲିହାପାତ
ଗଜ କମ୍ପୁଡ଼ି ଥିଲେ ଧରି ଦନ୍ତ ।
ଏଡ଼େ ବଳବନ୍ତ ।
ବହନ୍ତି ଦୁଇଶ ପଲଅ କୁନ୍ତ ।

କ୍ଷତ୍ରିୟ ସନ୍ତାନ ଅଭିମନ୍ୟୁ ବାଲ୍ୟକାଳରୁ "ଗୁଲିମାରିବା, ଖଣ୍ଡା ଖେଳିବା, କାଣ୍ଡ ବାନ୍ଧିବା, ଘୋଡ଼ା ଚଢ଼ିବା" ପ୍ରଭୃତି ସମର ନିପୁଣ ଯୋଦ୍ଧାମାନଙ୍କର ବିଦ୍ୟା ଶିକ୍ଷା କରିଥିଲେ । କହିଲେ ହେଁ, ଶିକାର କରିବାରେ ସେ ଅତିଶୟ ଆମୋଦ ଅନୁଭବ କରୁଥିଲେ । ଥରେ ସେ ଶରଦ୍ୱାରା ଗୋଟିଏ ଚକ୍ରବାକକୁ ହତ୍ୟା କଲେ; ଫଳରେ ପତି ଶୋକବିଧୁରା ଚକ୍ରବାକୀ କରୁଣ କ୍ରନ୍ଦନରେ

ବନଭୂମି ପ୍ରକମ୍ପିତ କରିଦେଲା । ଏହି ଘଟଣାଟି ତାଙ୍କ ମନରେ ଘୋର ପ୍ରତିକ୍ରିୟା ସୃଷ୍ଟି କରିଥିବାର ଅନୁମିତ ହୁଏ । ଜୀବ ପ୍ରତି ଦୟା—ଯାହା ବୈଷ୍ଣବଧର୍ମର ଶ୍ରେଷ୍ଠ ଆଦର୍ଶ—ତାହା ଅଭିମନ୍ୟୁଙ୍କ ଜୀବନରେ ଅତୀବ ଧ୍ୟେୟ ହେଲା । ଶୋକାତୁରା ଚକବାକୀ ହିଁ ତାଙ୍କୁ କୃଷ୍ଣ ବିରହକାତରା ଶ୍ରୀମତୀ ରାଧାଙ୍କର ଅବ୍ୟକ୍ତ ଶୋକକୁ ଚିତ୍ରଣ କରିବାରେ କମ୍ ସାହାଯ୍ୟ କରିନାହିଁ । ଅଭିମନ୍ୟୁ ପକ୍ଷୀପାଳନରେ ବଡ଼ ସୁଦକ୍ଷ ଥିଲେ । ତାଙ୍କର 'ଚଢ଼େଇ ଗୀତ' ତାର ପରିଚୟ ଦିଏ—

ଜରଣ୍ଡି ମାଛ ଅଙ୍କୁଡ଼ି ହୋଇବ,
ମୋତି ପନ୍ତି ପଡି ବରଙ୍ଗୀ ଥିବ,
କାଉଗୋଡ଼ା ପେଟ୍ରି ମୁଣ୍ଡିଆ ଜାତ,
ଡେଣାମୁଣ୍ଡେ ପକ୍ଷୀ ପତ୍ରିକ ପନ୍ତି,
ଦେଖି ଏ ଚଢ଼ାଇ,
ଯହିଁ ଇଚ୍ଛା ତହିଁ କର ଲଢ଼ାଇ ।
ଲମ୍ବ ଲାଙ୍ଗୁଡ଼ିଆ ରଙ୍ଗ ପାଟିଆ,
ବତାସ୍ତ୍ରି ଗୋଡ଼ିଆ ସରୁ ଥଣ୍ଟିଆ,
ଲାଞ୍ଜ ବହଳିଆ ଡେଣା ପାଟୁଆ,
ଭଣ୍ଡି ପାଉଳିଆ କଳା ଦେଙ୍କିଆ,
ଏମନ୍ତ ଚଢ଼ାଇ,
ପୋଷିଥିଲେ ରଣେ ଦିଅ ବଢ଼ାଇ ।

ବାଲ୍ୟକାଳରୁ ଅଭିମନ୍ୟୁ ଉପଯୁକ୍ତ ଶିକ୍ଷା ଲାଭ କରିଥିଲେ । ପ୍ରାଚୀନ ରୀତିର ଅଙ୍କ ଶାସ୍ତ୍ର, ଗଣିତ, ଅମରକୋଷ, ସଂସ୍କୃତ ବ୍ୟାକରଣ, ଶ୍ରୀମଦ୍ ଭାଗବତ, ପ୍ରାଚୀନ ଓଡ଼ିଆ ପୁରାଣ ଓ କାବ୍ୟ

ପ୍ରଭୃତି ଯଥା ସମୟରେ ସେ ଅଧ୍ୟୟନ କରିଥିଲେ । ଶବ କର୍ମରେ ତାଙ୍କର ଅଶେଷ ପାରଦର୍ଶିତା ମଧ୍ୟ ଥିଲା ।

ସାଧୁଚରଣ ଦାସ ବା କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା ଅଭିମନ୍ୟୁଙ୍କ ବାଲ୍ୟବନ୍ଧୁ, କାବ୍ୟଗୁରୁ ଓ ଧର୍ମଗୁରୁ ଥିଲେ । ଏହି ଧର୍ମମନ୍ତ୍ରର ଗ୍ରହଣ ପରେ ଅଭିମନ୍ୟୁଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହୋଇଥିଲା । ୧୯ ବର୍ଷ ବୟସରେ ସେ ପିତୃହୀନ ହେବାରୁ ରାଜ୍ୟର ସମସ୍ତ ଭାର କନିଷ୍ଠ ଭ୍ରାତା ସୁରଟଙ୍କ ଉପରେ ନ୍ୟସ୍ତ କରିଦେଇ ଗୃହଦେବତା ରାଧାମୋହନଙ୍କ ସେବା ଆରାଧନାରେ ସେ କାଳ କଟାଇବାକୁ ଲାଗିଲେ । ରାଧାମୋହନଙ୍କ ଅର୍ଚ୍ଚନା, କୃଷ୍ଣ କାବ୍ୟ ରଚନା, ଓ ସଖା ମେଳରେ ରସାଳାପ ହିଁ ତାଙ୍କ ଅବଶିଷ୍ଟ ଜୀବନର ମୁଖ୍ୟ କର୍ମ ଥିଲା । କୃଷ୍ଣପ୍ରେମ-ବିହ୍ୱଳ ଏହି ରସିକ କବିଙ୍କ ହୃଦୟରେ ରାଧାମୋହନ ସେହିଁ ସ୍ଥାନ ଅଧିକାର କରିଥିଲେ ତାର ପ୍ରମାଣ ତାଙ୍କ ଅନ୍ତିମ ଜୀବନ ଆମକୁ ଦିଏ । ଜୀବନର ଶେଷ ଭାଗରେ ସେ ବୃନ୍ଦାବନ ଯାତ୍ରୀ ହୁଅନ୍ତି; କିନ୍ତୁ ଗ୍ରାମର କିଛି ଦୂର ଯିବା ପରେ ସେ ଅତିଶୟ ଦୁର୍ବଳ ହୋଇ ପଡ଼ନ୍ତି । ସେତେବେଳେ ରାଧାମୋହନଙ୍କ ଦର୍ଶନ ପାଇଁ ତାଙ୍କର ଅଭିଳାଷ ହେଲା । ଇଷ୍ଟଦେବତା ରାଧାମୋହନ ତାଙ୍କ ନିକଟକୁ ଅଣାଗଲେ । ଦେବତାଙ୍କ ଦର୍ଶନ ମାତ୍ରେ ତାଙ୍କର ଶେଷ ନିଃଶ୍ୱାସ ଛାଡ଼ି ଶରୀର ପରିତ୍ୟାଗ କଲେ ।

ମୋଟାମୋଟି ଭାବେ ଅଭିମନ୍ୟୁଙ୍କ ଜୀବନୀ ଆଲୋଚନା କରାଗଲା । ଏହି ଘଟଣା ବିହୀନ ଭକ୍ତ ଜୀବନରେ ବୈଚିତ୍ର୍ୟ ଅନୁସନ୍ଧାନ କରିବା ବୃଥା । ପୁନଶ୍ଚ, ଓଡ଼ିଶାର ଅନ୍ୟାନ୍ୟ ଭକ୍ତ କବିମାନଙ୍କ ଜୀବନୀ ପରି ଅଭିମନ୍ୟୁଙ୍କ ଜୀବନୀ ଅତିଶୟ ସଂକ୍ଷିପ୍ତ ଓ ସେ ବିଷୟରେ ଆମ୍ଭମାନଙ୍କର ଜ୍ଞାନ ମଧ୍ୟ ଅତିଶୟ ସୀମିତ ।

ତଥାପି ଅଭିମନ୍ୟୁ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଯଥାର୍ଥରେ ଏକ ଅପ୍ରତିଦ୍ୱନ୍ଦୀ ଅଭିମନ୍ୟୁ । ସେଥିପାଇଁ ସେ ଆମ ସାହିତ୍ୟରେ ଅମର ହୋଇଛନ୍ତି । ତାଙ୍କ କେତେକ ଆଭାସ ଏ ପ୍ରବନ୍ଧର ଦ୍ୱିତୀୟ-ଭାଗରେ ଆଲୋଚିତ ହୋଇଛି ।

( ୨ )

"ଚଢ଼େଇ ଗୀତ" ଓ 'ବାଘଗୀତ'ରୁ ଅଭିମନ୍ୟୁଙ୍କ କବି ଜୀବନର ପ୍ରଥମ ଅଧ୍ୟାୟ ଆରମ୍ଭ ହେଲେ ହେଁ ସବୁ କବିଙ୍କ ପ୍ରାଥମିକ ରଚନା ପରି, ଏ ସବୁ ରଚନା ତାଙ୍କ ପ୍ରକୃତ କାବ୍ୟର ପ୍ରକୃଷ୍ଟ ନିଦର୍ଶନ ନୁହେଁନ୍ତି । ଏ ସବୁର ସରଳ ଭାଷା, ଅନାଡ଼ମ୍ବର ଭାବ ପ୍ରକାଶ ଶୈଳୀ ଦେଖିଲେ ମନେହୁଏ ଯେପରି ତାଙ୍କର ଭବିଷ୍ୟତ୍ କବି-ପ୍ରତିଭା ଏ ସବୁଥିରେ ଅତି ପ୍ରଚ୍ଛନ୍ନଭାବେ ଲୁକ୍କାୟିତ ହୋଇ ରହିଅଛି ।

ମହାଭାରତାନ୍ତର୍ଗତ ଦୁର୍ଯ୍ୟୋଧନ କନ୍ୟା ସୁଲକ୍ଷଣା ସହିତ କୃଷ୍ଣ ପୁତ୍ର ଶାମ୍ବଙ୍କ ବିବାହ ପ୍ରସଙ୍ଗ ଅଭିମନ୍ୟୁଙ୍କ 'ସୁଲକ୍ଷଣା' କାବ୍ୟର ଉପଜୀବ୍ୟ ବିଷୟ । 'ଚଢ଼େଇଗୀତ' ରେ ଯେଉଁ ପ୍ରତିଭାର ଅଙ୍କୁରଣ ହୋଇଥିଲା, ଏ କାବ୍ୟ ସେଇ ପ୍ରତିଭାର କେବଳ ପରବର୍ତ୍ତୀ ବିକାଶ—ଏହା ହିଁ 'ସୁଲକ୍ଷଣା' କାବ୍ୟର ଯଥେଷ୍ଟ ପରିଚୟ । କାରଣ ଏହା ଅଭିମନ୍ୟୁଙ୍କ ପ୍ରକୃତ କବି-ପ୍ରତିଭାର ଶ୍ରେଷ୍ଠ ନିଦର୍ଶନ ନୁହେଁ । 'ପ୍ରେମକଳା' 'ପ୍ରେମଚିନ୍ତାମଣି' 'ପ୍ରେମତରଙ୍ଗିଣୀ' ଓ 'ରସବତୀ' କାବ୍ୟ ସମୂହ ଏହାଙ୍କ ଦ୍ୱାରା ରଚିତ ବୋଲି ଲୋକେ କହନ୍ତି, କିନ୍ତୁ ଯେତେଦୂର ମନେହୁଏ, ଏ ସବୁ ଆଜି ପର୍ଯ୍ୟନ୍ତ ମୁଦ୍ରା ଯନ୍ତ୍ରର ମୁଖ ଦର୍ଶନ କରି ନାହାନ୍ତି । ଅଭିମନ୍ୟୁଙ୍କ ରଚନା

ଭିତରେ 'ବିଦଗ୍ଧଚିନ୍ତାମଣି' ହିଁ ତାଙ୍କ କବି ମାନସର ଶ୍ରେଷ୍ଠ ସନ୍ତାନ ।

'ବିଦଗ୍ଧଚିନ୍ତାମଣି' ଆଜି ଏ ଦେଶର ଲକ୍ଷ ଲକ୍ଷ ବିଦଗ୍ଧ ହୃଦୟର ଜୀବନ୍ତ ଚିନ୍ତାମଣି । ଏହା ପୁରୀ ମନ୍ଦିର ପରି ବିରାଟ, ସୂର୍ଯ୍ୟମନ୍ଦିର ପରି ବିବିଧ କାରୁକାର୍ଯ୍ୟରେ ବିଭବଶାଳୀ ଓ ଭୁବନେଶ୍ୱରର ସ୍ୱର୍ଣ୍ଣସ୍ୱର୍ଣ୍ଣୀ ମନ୍ଦିର ପରି ନାନା ଅଳଙ୍କାରରେ ପରିପୂର୍ଣ୍ଣ । ଓଡ଼ିଆ ପଲ୍ଲୀବାଳାର ନିଷ୍କପଟ ହୃଦୟର ସହଜ ସରଳ ଭାଷା; ନାଗରୀ ଭୂଷା ବାରବିଳାସିନୀର ଭାବ ଅଭିବ୍ୟକ୍ତିର କୁଟିଳତା; ବଜ୍ର କଠୋର ହୃଦୟର କଠିନତା ଓ କର୍କଶତା— ଏ ସମସ୍ତ ଯଦି ଏକ ସ୍ଥଳରେ ଦେଖିବାକୁ ଇଚ୍ଛା, ତାହେଲେ 'ବିଦଗ୍ଧଚିନ୍ତାମଣି' ପାଖକୁ ଆସନ୍ତୁ । ଏଥିରେ ଭାଷାର କୋମଳତା, ସରଳତା ସଙ୍ଗେ କଠୋରତା ଓ କର୍କଶତା; ଭାବର ଲାଳିତ୍ୟ ସଙ୍ଗେ ଗାମ୍ଭୀର୍ଯ୍ୟ; ସବୁ ଦେଖିବାକୁ ପାଇବେ । ଏ କାବ୍ୟ ପଢ଼ି ବସିଲେ, ମନେହୁଏ, ଏହା ଯେପରି ହିମାଳୟ ପରି ଦୁର୍ଲଙ୍ଘନୀୟ, ସାଗର ପରି ଅନତିକ୍ରମଣୀୟ । ବ୍ରହ୍ମଧ୍ୟାନ ରତ ଯୋଗୀର ଅସୀମ ଧୈର୍ଯ୍ୟ ଓ ସାଧନା ନ ଥିଲେ 'ବିଦଗ୍ଧ'ର ପାଠକ ହେବା ବିଡ଼ମ୍ବନା ମାତ୍ର । ସମଗ୍ର ଓଡ଼ିଆ କାବ୍ୟ ସାହିତ୍ୟରେ ଏପରି କାବ୍ୟ ରତ୍ନ ଏକାନ୍ତ ବିରଳ । କବିସୂର୍ଯ୍ୟ ବଳଦେବଙ୍କ 'ଚମ୍ପୂ' ୩୨ଟି ସଙ୍ଗୀତରେ ଯାହା ଶେଷ କରିଛନ୍ତି, 'ବିଦଗ୍ଧ' ର ୯୬ଟି ଛାନ୍ଦ ମଧ୍ୟ ତାକୁ ଅପୂର୍ଣ୍ଣ କରି ରଖିଛନ୍ତି । ମନେହୁଏ, ସମଗ୍ର ବୈଷ୍ଣବ ସାହିତ୍ୟ—ସଂସ୍କୃତ, ବଙ୍ଗଳା ପଦ୍ୟାବଳୀ, ଓଡ଼ିଆ—ଓ ପ୍ରାଚୀନ ଓଡ଼ିଆ କାବ୍ୟ ସାହିତ୍ୟ ସାଗର ମନ୍ଥନ କରି ଅଭିମନ୍ୟୁ କାବ୍ୟାମୃତକୁ ଯେପରି ଗୋଟିଏ ବୃହତ୍ ଭାଣ୍ଡରେ ଆମକୁ ଏଇଟି ପରିବେଷଣ କରି ଦେଇଛନ୍ତି ।

'ବିଦଗ୍ଧ ଚିନ୍ତାମଣି' ଆରମ୍ଭ ହୋଇଛି—

"ଅପ୍ରାକୃତ ପ୍ରେମମୂର୍ତ୍ତି କୃଷ୍ଣ ରାଧା ହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ।"

କିନ୍ତୁ ଯଥାର୍ଥରେ ଗୌଡ଼ୀୟ ବୈଷ୍ଣବ ଧର୍ମର 'ଅପ୍ରାକୃତ ପ୍ରେମ' ଓ ତାର ଜୀବନ୍ତ ବିଗ୍ରହରୂପୀ 'ଅବ୍ୟକ୍ତଲୀଳା'କୁ ଏ ଦେଶର ବୈଷ୍ଣବ କବିମାନେ ଭାବ୍ୟାକାରରେ ବ୍ୟକ୍ତ କରିଥିବାର ଆମେ ଦେଖିବାକୁ ପାଉଁ । କିନ୍ତୁ ଅଭିମନ୍ୟୁ ଏହି 'ଅବ୍ୟକ୍ତଲୀଳା'କୁ ତାଙ୍କର ଏ ବିରାଟ ଗ୍ରନ୍ଥରେ ଯେପରି ବିଶଦ ଭଙ୍ଗୀରେ ଗଢ଼ି କରିଛନ୍ତି ତାହା ଏ ସାହିତ୍ୟରେ ସଂପୂର୍ଣ୍ଣ ଅଭିନବ ।

ଧର୍ମ ପ୍ରତି ବିଶେଷତଃ ଭକ୍ତିମୂଳକ ବୈଷ୍ଣବଧର୍ମ ପ୍ରତି ତାଙ୍କର ଐକାନ୍ତିକ ମମତା, ଜୀବନରେ ପିତୃ ବିୟୋଗ ତଥା ଚକ୍ରବାକୀର କରୁଣ ଆର୍ତ୍ତନାଦ ତାଙ୍କର ବ୍ୟକ୍ତିଗତ ଓ କବି ଜୀବନକୁ ଏକ ନୂତନ ମାର୍ଗରେ ପରିଚାଳିତ କରିଥିଲା । ତେଣୁ କରୁଣ ରସ ମାଧ୍ୟମରେ ରାଧା କୃଷ୍ଣଙ୍କ ମିଳନ ସଂପାଦନ କରିବା ତାଙ୍କ କବି ଜୀବନର ଶ୍ରେଷ୍ଠ ଲକ୍ଷ୍ୟ ହୋଇଥିଲା । ସେ ଗୋଟିଏ ସ୍ଥାନରେ କହିଛନ୍ତି—

ଦେଖ କାନ୍ତ ପ୍ରଭା ମିଶିବାର
କି ବର୍ଣ୍ଣି ପାରିବ କବି ଛାର ।
କି ଘନ ବିଜୁଳି ଅନ୍ଧାର ଚନ୍ଦ୍ରିକା
ଦିବସ ରଜନୀ ପରସ୍ପର ।
ମିଶାମିଶି,
ବନଭୂବି ପୀତ ଶ୍ୟାମ ଗଳ୍ପ ଦିଶି ।

ଏହି 'ପୀତ ଶ୍ୟାମ' କାନ୍ତିର ମିଳନ ଏ କାବ୍ୟର ଲକ୍ଷ୍ୟ ହେଲେହେଁ ମିଳନର ଏ ରୂପଟି ସର୍ବତ୍ର ଏହିପରି ରକ୍ଷିତ

ହୋଇନାହିଁ । ଶୃଙ୍ଗାର ରସ ନାମରେ ପରମ୍ପରାର ଅନୁରୋଧରେ ଏହାର ବ୍ୟତିକ୍ରମ ମଧ୍ୟ କମ୍ ହୋଇନାହିଁ ।

'ବିଦଗ୍ଧଚିନ୍ତାମଣି' କାବ୍ୟ ରୂପଗୋସ୍ୱାମୀଙ୍କ 'ବିଦଗ୍ଧ ମାଧବ ନାଟକର କଥାବସ୍ତୁ ପ୍ରସଙ୍ଗରେ ବହୁପରିମାଣରେ ଋଣୀ । ରାଧାଙ୍କ ସ୍ତ୍ରୀପୁଂସରେ ଭ୍ରମ, କୃଷ୍ଣଙ୍କ ରାଧାନାମ ଶ୍ରବଣ, ପତ୍ର ଅଦାନ ପ୍ରଦାନ, ବଂଶୀର ପ୍ରଭାବ, ମିତ୍ର ଚୂଡ଼ାବଳୀଙ୍କରେ ଅଭିସାର କେଳିବର୍ଣ୍ଣନା ପ୍ରଭୃତି ଘଟଣାଗୁଡ଼ିକ 'ବିଦଗ୍ଧମାଧବ'ରୁ ଗୃହୀତ । କିନ୍ତୁ ଅନ୍ୟପକ୍ଷରେ ଶୁକସାରୀ, କକ୍ଖଟୀ, ବୈଦ୍ୟାସଖୀ, ସୁବଳର ରାଧାବେଶ ଧାରଣ ପ୍ରଭୃତି ବିଷୟଗୁଡ଼ିକ ବିଦଗ୍ଧମାଧବ ନାଟକରେ ଯେପରି ନାଟକର ସମଗ୍ରତାକୁ ସାହାଯ୍ୟକରି ସୁଖପ୍ରଦ ହୋଇ ପାରିଛନ୍ତି, ବିଦଗ୍ଧଚିନ୍ତାମଣି' ରେ ଏସବୁ ସେଇପରି ହୋଇ ନାହାନ୍ତି । କାରଣ ଏସବୁ ଏ କାବ୍ୟରେ ସଂପୂର୍ଣ୍ଣ ଅସଂଲଗ୍ନ ଅବସ୍ଥାରେ ସଂଯୋଜିତ ହୋଇ ରହି ଥିବାରୁ ସେପରି ମନୋମୁଗ୍ଧକର ହୋଇ ପାରିନାହାନ୍ତି ।

ଅଭିମନ୍ୟୁ କହିଛନ୍ତି "ମିଳନ କରାଇଲେ ରାଧା ହରିଙ୍କି । ଲ[illegible]ବ ଆନନ୍ଦ ସୁଖ ଲହରୀଙ୍କି ।" ଏହା ଏ କାବ୍ୟ କ୍ଷେତ୍ରରେ ସଂପୂର୍ଣ୍ଣ ଯଥାର୍ଥ । କାରଣ ଏ ମିଳନ ବ୍ୟାପାରଟି କାବ୍ୟର କଥାବସ୍ତୁରେ ଅତିଶୟ ରୋଚକ ଓ ଚମତ୍କାର । ଏଇ ମିଳନର ପ୍ରାଥମିକ ଉନ୍ମେଷ ହୁଏ ରାଧାଙ୍କ ସ୍ତ୍ରୀପୁଂସରେ ଭ୍ରମ ଘଟଣାରୁ; ଏହାର ବିକାଶ ଓ ସ୍ଥାୟୀକରଣ ପୌର୍ଣ୍ଣମାସୀ ଦ୍ୱାରା ଅତି ମନୋମୁଗ୍ଧକରଭାବେ ସଂପାଦିତ ହୋଇଛି । ତେବେହେଁ, ଏ ମିଳନର ପୂର୍ବାଭାସ ରାଧାଙ୍କ ଜନ୍ମ ସମୟରେ ମଧ୍ୟ ପରିଲକ୍ଷିତ ହୁଏ । ରାଧା ଜନ୍ମ ହେଲେ; କିନ୍ତୁ ତାଙ୍କ ଆଖି ଫିଟିଲା କେବଳ କୃଷ୍ଣମୁଖ ଦର୍ଶନ ପରେ ।

ଏ କାବ୍ୟରେ ବିପ୍ରଲମ୍ଭ ଶୃଙ୍ଗାରର ପୂର୍ଣ୍ଣ ପ୍ରତିଷ୍ଠା ହୋଇଯାଇଛି । ସମ୍ଭୋଗ ଶୃଙ୍ଗାରର ସ୍ଥାନ ଅତ୍ୟନ୍ତ ସୀମିତ । ପୂର୍ବାନୁରାଗର ବୈଚିତ୍ର୍ୟ ଅନନ୍ତ ଓ ଅପରିସୀମ । ଏହି ପୂର୍ବାନୁରାଗ ବର୍ଣ୍ଣନା ସ୍ରଷ୍ଟାଙ୍କ କାବ୍ୟର ଗୋଟିଏ ଅଂଶରୁ ଅନ୍ୟ ଅଂଶ ପର୍ଯ୍ୟନ୍ତ ବିସ୍ତୃତ । କେବଳ ଯୁଗଳସ୍ୱପ୍ନ ଦର୍ଶନ ପର୍ଯ୍ୟନ୍ତ ପୂର୍ବାନୁରାଗଟି ସ୍ତ୍ରୀପୁଂସରେ ଭ୍ରମ କୃଷ୍ଣଙ୍କ ରାଧାନାମ ଶ୍ରବଣ, ପରସ୍ପରପ୍ରତି ଆକର୍ଷଣ ଓ ଦୂତୀ ପ୍ରେରଣରେ ସୀମିତ । ଏହି ଯୁଗଳ ସ୍ୱପ୍ନ ଦର୍ଶନଠାରୁ କାବ୍ୟଟି ଏକ ନୂତନ ଭଙ୍ଗୀରେ ଗତି କରିଥିବାର ଅନୁମିତ ହୁଏ । ଯୁଗଳସ୍ୱପ୍ନ ଦର୍ଶନ ହିଁ ନାୟକ ନାୟିକାଙ୍କ ପୂର୍ବର ପ୍ରଥମ ପ୍ରେମକୁ ଦୃଢ଼ୀଭୂତ କରିବା ସଙ୍ଗେ ସଙ୍ଗେ ପୂର୍ବାନୁରାଗ ବର୍ଣ୍ଣନାକୁ ଅଧିକ ମଧୁମୟ କରି ତୋଳିଛି । ଏହାପରେ ସ୍ୱପ୍ନାନ୍ତର ବିଳାପ ଛାନ୍ଦଗୁଡ଼ିକ କେତେକ ସ୍ଥଳରେ ବାଗାଡ଼ମ୍ବର ଓ ଦୁର୍ବୋଧ ଅଳଙ୍କାରରେ ପରିପୂର୍ଣ୍ଣ ହେଲେହିଁ, ଏହି ଛାନ୍ଦ ମାନଙ୍କରେ ଅନୁରାଗର ତୀବ୍ରତା ଓ ସାନ୍ଦ୍ରତା ଅସ୍ୱୀକାର କରି ହୋଇନପାରେ । ତତ୍‌ପରେ ନାୟକ ଓ ନାୟିକାଙ୍କ ଅବଚେତନ ମନରେ ପ୍ରେମ ବିଷୟରେ ଏକ କଠିନ ପ୍ରଶ୍ନ ଲାଗିଉଠେ । ପରକୀୟା ପ୍ରୀତି ପ୍ରସଙ୍ଗରେ ସେମାନଙ୍କ ମନରେ ଯେଉଁ ସନ୍ଦେହ ଜାଗି ଉଠିଛି ତାର ସମ୍ୟକ୍ ସମାଧାନ ବିଷାଖା ଓ ମଧୁମଙ୍ଗଳ କରିଛନ୍ତି । ପରକୀୟା ପ୍ରୀତି ବିଷୟରେ ନାରୀପ୍ରାଣ ପ୍ରଥମେ ଭୟାକୁଳ ହେବା ସମ୍ଭବପର, ଏ କାବ୍ୟରେ ପ୍ରଥମେ ନାରୀ ମୁଖରେ ନାରୀ ସୁଲଭ ସରଳଭାଷାରେ ପରକୀୟା ପ୍ରୀତି ବିଶ୍ଳେଷଣ ଅତୀବ ଚମତ୍କାର । ପରେ, ପୁରୁଷ ମୁଖରେ ଏ ପ୍ରୀତିର ଦାର୍ଶନିକ ଓ ତାତ୍ତ୍ୱିକ ବିଶ୍ଳେଷଣ ଅତୀବ ଅସ୍ୱାଭାବିକ ହେଲେହେଁ ତାହାହିଁ ଅତଶାଦ୍ୟ ବାସ୍ତବ ।

କାନନ ଭ୍ରମଣ ବେଳେ ରାଧାକୃଷ୍ଣଙ୍କ ଭେଟହୁଏ । ସେଇଠାରୁ ଗିରିନିର୍ଝରର କଳକଳ ନିନାଦ ପରି ପୂର୍ବାନୁରାଗର ଏକ ସ୍ୱତନ୍ତ୍ର ଝଙ୍କାର ଆମେ ଶୁଣିବାକୁ ପାଉଁ । ଉଭୟଙ୍କ ଭାବତରଙ୍ଗ ମୁଖରୁ ଧୈର୍ଯ୍ୟ-ବେଳା ଅତିକ୍ରମ କରିବାକୁ ଲାଗିଲେଣି । ତେଣୁ ରାଧାଙ୍କ ମୁଖରୁ ଆମେ ଶୁଣୁ :—"ରାଧାଧର ସଖୀକର, ବୋଲନ୍ତି ଅଙ୍କଟ ଅଞ୍ଜନକର ଗୋ, ଲାଜଭୟ ଘୁଞ୍ଚିଲି ନିକର । ସଜନୀ ଗୋ ।" ପୁଣି "ମୋତେ ଲଭିବା ହେତୁରେ, ଅନୁସନ୍ଧାନ୍ତି କେତେ ହେତୁରେ ଗୋ, ବଶ ନୋହୁବକେ ତେମନ୍ତରେ ଗୋ" ଏବଂ "ମୋ ସ୍ନାନଜଳ ଘାଟରେ, ଭାସିଲି ବୋଲି ଫୁଲବନ୍ତି ହାଟରେ ଗୋ, ଛଡ଼ା କୁଙ୍କୁମ ଲବ୍ଧ ଲଟରେ । ସଜନୀ ଗୋ । ଛଡ଼ାମାଳକୁ ଲୋଡ଼ାଇ, କି ସ୍ନେହେ ନେଇ ଚୂଡ଼ାରେ ଗୁଡ଼ାଇ, ହେବି ଇନ୍ଦ୍ର କରନ୍ତି ବଡ଼ାଇ ଗୋ ।" ଏ ସବୁ ରାଧାଙ୍କ ଗାଢ଼ ଅନୁରାଗର ପରିପ୍ରକାଶକ ନୁହନ୍ତି କି ? ତେଣୁ ରାଧାଙ୍କ ପକ୍ଷରେ "ନିନ୍ଦା କଳଙ୍କକୁ ପଙ୍କରେ ମାଡ଼ି, ନିଃଶେଷ କରି ମାନଗିରିଡାଡ଼ି, ନିଅଁରେ ଲାଜକୁ ଦିଅଗୋ ପୋଡ଼ି । ନିଅ କୁଳତରୁ ମୂଳ ଉପାଡ଼ି । ନିର୍ଭୟେ ବିଗୁର । ନିପାତ ପାତିବ୍ରତ କଥା କର ।" କଥାଗୁଡ଼ିକ ଅଶୋଭନୀୟତ ନୁହେଁ ।

ରାଧା ଦୁଃଖରେ ମ୍ରିୟମାଣା ହୋଇ କୃଷ୍ଣଙ୍କ କ୍ରୀଡ଼ାବନ, ବୃନ୍ଦାବନକୁ ପୁଷ୍ପଚୟନ ବ୍ୟାଜରେ ଯାଇଛନ୍ତି । ସେଠାରେ ମଧ୍ୟ ଗୁରୁଚକ୍ଷୁର ମିଳନ ହୁଏ । ଏଇଟି ପୁଣି ସେଇ ଅନୁରାଗର ସ୍ରୋତ ଅଭିନବ ଗତିରେ ପ୍ରବାହିତ ହୋଇଛି । ଉଭୟେ ଉଭୟଙ୍କ ପ୍ରତି ଅନୁକୃଷ୍ଟ; ଏହାର ସଂକେତ ପାଇ ସବ 'ବଂଶୀମୟ' କରିଛନ୍ତି । ଏସବ ପୁନର୍ବାର ସେଇ ଅନୁରାଗର ରଙ୍ଗୀନ କଳ୍ପନାରେ ପରିପୂର୍ଣ୍ଣ । ମିଳନର ବନ୍ଦୋବସ୍ତ ପୁଣି ହୋଇଛି । ମିତ୍ର ପୂଜାଛଳରେ ରାଧାଯିବେ । କୃଷ୍ଣ ବଟୁରୂପରେ ପୂଜକ ହେବେ । ଏ ମିଳନବେଳେ

ପରସ୍ପର ଭିତରେ ଘଟିଥିବା କଥୋପକଥନ ଅତିଶୟ ଆମୋଦ-ପ୍ରଦ ।

କୃଷ୍ଣଙ୍କୁ ନ ଦେଖିଲେ ରାଧାଙ୍କ ଆଖି ନ ଫିଟିଲାପରି ରାଧାଙ୍କ ହସ୍ତନିର୍ମିତ ଖାଦ୍ୟବିନା କୃଷ୍ଣଙ୍କୁ ଆଉ କୌଣସି ପଦାର୍ଥ ରୁଚିକର ବୋଧ ହେଉନାହିଁ । ତେଣୁ ରାଧାଙ୍କ ହସ୍ତର ପାକକର୍ମ ଓ କୃଷ୍ଣଙ୍କ ଭୋଜନ ବ୍ୟାପାର ତତ୍‌ପରେ ବର୍ଣ୍ଣିତ ହୋଇଅଛି । ତଥାପି ରାଧାଙ୍କ ମିହିରପୂଜା ବନ୍ଦ ହୋଇ ଯାଇନାହିଁ । ସାମୟିକ ବିରହ ଯନ୍ତ୍ରଣାର ଉପଶମ ପାଇଁ ଦୂତୀ ହସ୍ତରେ ସେମାନେ ଅତ୍ୟନ୍ତ ମର୍ମସ୍ପର୍ଶୀ ବାର୍ତ୍ତା ମଧ୍ୟ ପ୍ରେରଣ କରିଛନ୍ତି । ହୃଦୟର ଆବେଗରେ ରାଧା କହି ଉଠିଛନ୍ତି "ଦୂତୀଗୋ, କହ ବନ୍ଧୁଙ୍କୁ ଯାଇ ମୋର ଉତ୍ତର । ରାଧା ମାଗିଛନ୍ତି ଦେବ ପ୍ରେମଛଡ଼ା ମନ୍ତ୍ର ।" ଏ ପ୍ରେମଛଡ଼ା ମନ୍ତ୍ରର ଆବଶ୍ୟକତା ଆଉ ହୋଇନାହିଁ—ଉଭୟଙ୍କ ମିଳନ ଓ ସଂଭୋଗ ଶୃଙ୍ଗାରର ବର୍ଣ୍ଣନା ତାପରେ ପରେ ଚାଲି ଆସିଛି ।

ବିସ୍ତୃତ ସମୁଦ୍ରର ସୁଦୂର ତରଙ୍ଗ ମାଳା ଯେପରି ଘାତ ପ୍ରତିଘାତ ପାଇ କ୍ରମଶଃ ବୃହତ୍ ରୂପ ଧାରଣ କରେ ଓ ପରିଶେଷରେ ତାହା ବିଶାଳ ଆକାରରେ ବେଳାଭୂମିରେ ବାଜି ଚୂର୍ଣ୍ଣୀଭୂତ ହୁଏ, ସେହିପରି ଏ କାବ୍ୟରେ ପୂର୍ବାନୁରାଗ ଗୋଟିକ ପରେ ଗୋଟିଏ ଅଭିନବ ଆକାର ଧାରଣ କରି ସଂଭୋଗ ଶୃଙ୍ଗାରରେ ନିଃଶେଷ ହୋଇ ଯାଇଛନ୍ତି । ତେଣୁ ଏହି କାବ୍ୟର ସମଗ୍ରତା ଦୃଷ୍ଟିରୁ ରାଧାକୃଷ୍ଣଙ୍କ ଏହି ସାମୟିକ ମିଳନ ଗୁଡ଼ିକ 'ମାଇଲ ଷ୍ଟୋନ' ପରି ଆମକୁ ଦେଖା ଯାଉଛନ୍ତି । ପୂର୍ବାନୁରାଗ ଯେପରି ଘଟଣାର ଘାତ ପ୍ରତିଘାତରେ ଏଠାରେ ଜୀବନ୍ତ, ସେମିତ ଦୃଷ୍ଟାନ୍ତ ଓଡ଼ିଆ ପ୍ରାଚୀନ କାବ୍ୟ ସାହିତ୍ୟରେ ଏକାନ୍ତ ବିରଳ ।

ଅନୁସନ୍ଧାନ କରି ବସିଲେ ବିଦଗ୍ଧ ଚିନ୍ତାମଣିର ବହୁ ସ୍ଥଳରେ ଭାଷା, ଭାବ, ଅଳଙ୍କାର କଥାବସ୍ତୁ ପରସ୍ୱ ବୋଲି ସହଜରେ ପ୍ରମାଣିତ ହୋଇପାରିବ । କିନ୍ତୁ ଅଭିମନ୍ୟୁଙ୍କ ବିରାଟ କବି ପ୍ରତିଭା-ବଳରେ ଏମାନେ ଏପରି ନୂତନ ରୂପଧାରଣ କରିଛନ୍ତି ଯେଉଁଥିରେ ପରସ୍ୱଟି ନିଜସ୍ୱ ବୋଲି ଆମ ଆଗରେ ପ୍ରତିଭାତ ହୁଏ । କାବ୍ୟ ମନ୍ଦିରର ଏଇ ବିରାଟ ଗାତ୍ରରେ ଅଭିମନ୍ୟୁ ବହୁ ସ୍ଥଳର ବହୁ ମୂଲ୍ୟବାନ ରତ୍ନ ସଯତ୍ନରେ ଗ୍ରଥିତ କରିଛନ୍ତି । ଏ ରତ୍ନ ସବୁ ପରସ୍ୱ ହୋଇପାରେ । କିନ୍ତୁ ସେ ସବୁକୁ ଯେଉଁ ପ୍ରତିଭା ଏପରି ସୁନ୍ଦର ଭାବେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ସଜାଇ ରଖିଛି ତା ପାଖରେ ଆମ ମୁଣ୍ଡ ଅପେଅପେ ନଇଁ ଯାଏ ନାହିଁ କି ?

'ବିଦଗ୍ଧଚିନ୍ତାମଣି'ର କୌଣସି ଛାନ୍ଦ ଅଭିମନ୍ୟୁଙ୍କ ନିଜର ସୃଷ୍ଟି ନୁହେଁ । କଷ୍ଟକଳ୍ପନା, ଦୁର୍ବୋଧ ଶବ୍ଦ ଯୋଜନା ଓ କଠିନ ଅଳଙ୍କାର ପ୍ରୟୋଗରେ ସେ ଅନେକ ଛାନ୍ଦକୁ ପାଣ୍ଡିତ୍ୟରେ ପୂର୍ଣ୍ଣ କରିଦେଇଛନ୍ତି । ଏ ସ୍ଥଳମାନଙ୍କରେ ସେ ଅନୁକରଣ ଓ ଅନୁସରଣର ଦାସ ହୋଇ ନିଜର କବିଗୌରବ ହରାଇ ବସିଛନ୍ତି । କିନ୍ତୁ ଯେଉଁଠି ସେ କାନ୍ତକୋମଳ ଭାଷାରେ ଲଳିତ ଛନ୍ଦର ଆଶ୍ରୟ ନେଇଛନ୍ତି ସେଠାରେ ଅଭିମନ୍ୟୁ ନିଜେ ନିଜକୁ ଅତିକ୍ରମ କରିଛନ୍ତି । ଯେଉଁମାନେ ଓଡ଼ିଆ ପ୍ରାଚୀନ କାବ୍ୟମାନଙ୍କୁ ସ୍ୱକୀୟା ଓ ପରକୀୟା ପ୍ରୀତିର କାବ୍ୟରୂପରେ ବିଭାଗ କରି ଅଧ୍ୟୟନ କରୁଥିବେ ସେମାନେ ନିଶ୍ଚୟ ଅନୁଭବ କରିଥିବେ ଯେ ସ୍ୱକୀୟା ପ୍ରୀତି ସମ୍ବଳିତ ଓଡ଼ିଆ କାବ୍ୟର ଭାଷା ଅପେକ୍ଷା ପରକୀୟାପ୍ରୀତି ମୂଳକ ବୈଷ୍ଣବ କାବ୍ୟର ଭାଷା ଅତିଶୟ ମଧୁର, କୋମଳ ଓ ପ୍ରୀତିକର । ବଙ୍ଗୀୟ ପଦାବଳୀ ସାହିତ୍ୟ ପଠନ ହେତୁ ଓଡ଼ିଆ ବୈଷ୍ଣବମାନେ ଯେ ଏ ଦେଶର ଭାଷାକୁ ଏପରି ସରଳ ଓ କୋମଳ

କରିପାରିଛନ୍ତି ଏପରି ନିଗୂଢ଼ ସତ୍ୟକୁ ଅସ୍ୱୀକାର କରିହୋଇନପାରେ । ଯେଉଁ ବୈଷ୍ଣବ କବିମାନେ ଓଡ଼ିଆ ଭାଷାରେ ଏ ବିପ୍ଳବ ସୃଷ୍ଟି କରିଛନ୍ତି ଆମ୍ଭମାନଙ୍କ ଆଲୋଚ୍ୟ ଅଭିମନ୍ୟୁ ସେମାନଙ୍କ ମଧ୍ୟରେ ଅନ୍ୟତମ ।

ଏ କାବ୍ୟର କଥାବସ୍ତୁକୁ ଅନୁସରଣ କଲେ ମୋଟାମୋଟି ଭାବେ ଘଟଣାବଳୀ ମଧ୍ୟରେ ଏକ ସହଯୋଗିତା ଓ ପରସ୍ପରର ସଂଲଗ୍ନତା ଆମେ ଅନୁଭବ କରିପାରିବୁ । ତଥାପି, ସ୍ଥଳବିଶେଷରେ ଏହାର କେତେକ ଛାନ୍ଦ ଯେ ନିରର୍ଥକ ଓ ବାହୁଲ୍ୟ ତା ଅସ୍ୱୀକାର କରିପାରିବୁ ନାହିଁ । କିନ୍ତୁ ଏ ଛାନ୍ଦଗୁଡ଼ିକର ମୂଲ୍ୟ ସମୂହ କାବ୍ୟାଲୋଚନା ଦୃଷ୍ଟିକୋଣରୁ ବିଶେଷ କିଛି ନଥିଲେହେଁ ଏ ସବୁ ଯେ ସ୍ୱୟଂ ସଂପୂର୍ଣ୍ଣ ଏହା ନିଗୂଢ଼ ସତ୍ୟ । ଦୀର୍ଘ ୩୦ ବର୍ଷର ଅକ୍ଳାନ୍ତ ଅଧ୍ୟବସାୟରେ ଏ କାବ୍ୟ ରଚିତ ହୋଇଥିବାରୁ ଏଥିରେ ସର୍ବତ୍ର ବିଷୟର ସାମ୍ୟ ଖୋଜିବା ବିଡ଼ମ୍ବନା ମାତ୍ର । କିନ୍ତୁ ସମଗ୍ର ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକମାତ୍ର ଅଭ୍ରାନ୍ତ ପ୍ରତିନିଧି ହେଉଛନ୍ତି ବିଦଗ୍‌ଧଚିନ୍ତାମଣି । କାଳ୍ପନିକ କାବ୍ୟର ସମସ୍ତ ବୈଶିଷ୍ଟ୍ୟ, ବୈଷ୍ଣବ ପ୍ରେମ ଧର୍ମର ସମସ୍ତ ଗୂଢ଼ ଦାର୍ଶନିକତତ୍ତ୍ୱ, ମାନବିକତା ଓ କବିତା ଦୃଷ୍ଟିକୋଣରୁ ବୈଷ୍ଣବସାହିତ୍ୟର ସମସ୍ତ ଶ୍ରେଷ୍ଠ କାବ୍ୟଗୌରବ ଏଇ ତିନୋଟି ବିଶିଷ୍ଟ ଉପାଦାନର ଅପୂର୍ବ ମିଳନ, ତ୍ରିବେଣୀ ସଙ୍ଗମପରି, କେବଳ ଏଇ ଏକମାତ୍ର କାବ୍ୟରେ ଆମେ ଦେଖିବାକୁ ପାଉଁ । ଯଥାର୍ଥତଃ ବିଦଗ୍‌ଧଚିନ୍ତାମଣି ଓଡ଼ିଆ ସାହିତ୍ୟରେ ଏକ ଅପୂର୍ବ ଓ ଅନବଦ୍ୟ ସୃଷ୍ଟି । ❋

●

---

❋ ପ୍ରବନ୍ଧର ପ୍ରଥମଭାଗରେ ଥିବା ଅଭିମନ୍ୟୁଙ୍କ ଜୀବନୀ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ପ୍ରବନ୍ଧରୁ ସଂଗୃହୀତ ।

# ଭକ୍ତ ମଧୁସୂଦନ

ଭକ୍ତ ମଧୁସୂଦନ ଉତ୍କଳରେ ନବଯୁଗର ଜଣେ ଶ୍ରେଷ୍ଠ ମନୀଷୀ । ସେ ଯେପରି ସୁପଣ୍ଡିତ, ସେହିପରି ଏକାନ୍ତ ପରମାର୍ଥନିଷ୍ଠ ସାଧୁପୁରୁଷ ଥିଲେ । ଦୀର୍ଘ ଧର୍ମମୟ ଜୀବନରେ ସେ ସ୍ୱକୀୟ ଈଶ୍ୱରଦତ୍ତ ପ୍ରତିଭାର ଯେଉଁ ପରିଚୟ ଦେଇଯାଇଅଛନ୍ତି, ତହିଁର ପ୍ରତ୍ୟେକକୁ ବର୍ଣ୍ଣନା କଲେ ଗୋଟିଏ ବଡ଼ ଗ୍ରନ୍ଥ ହେବ । ମାତ୍ର ଏଠାରେ ତାହାର ଅବସର ନାହିଁ । ତେଣୁ ପ୍ରଥମେ ତାଙ୍କର ଜନ୍ମ ଓ କର୍ମ ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଦେବାପରେ ଧର୍ମମୟ ଜୀବନ ସମ୍ବନ୍ଧରେ ଦୁଇଚାରି କଥା ଲେଖାଯିବ ।

ମଧୁସୂଦନଙ୍କ ପିତା ଭାଗୀରଥି ରାଓ ସୁବାକଲ୍ଲା ଗୋପ ଅଞ୍ଚଳର ଅଧିବାସୀ ଥିଲେ ଏବଂ ପୋଲିସ ବିଭାଗରେ କର୍ମ କରୁଥିଲେ । ୧୮୫୩ ଖ୍ରୀଷ୍ଟାବ୍ଦ ମାଘମାସ ଶ୍ରୀପଞ୍ଚମୀ ତିଥିରେ ପୁରୁଷୋତ୍ତମ କ୍ଷେତ୍ରରେ ମଧୁସୂଦନଙ୍କ ଜନ୍ମ । ସେ ପର୍ଯ୍ୟନ୍ତ ପାଶ୍ଚାତ୍ୟ

ଶିକ୍ଷା ଏ ଅଞ୍ଚଳରେ ସମ୍ୟକରୂପେ ବିସ୍ତାରିତ ହୋଇନଥିଲା । ତେଣୁ ଭାଗୀରଥି ସର୍ବ ଗୋପ ଗ୍ରାମ୍ୟପାଠଶାଳାରେ ପୁତ୍ରଙ୍କୁ ପ୍ରାଥମିକ ଶିକ୍ଷା ଦେବାର ବ୍ୟବସ୍ଥା କରିଥିଲେ । ସେ ମହାବ୍ୟକ୍ତି ଦେଶୀୟ ବୋଲି ଜାତିର ପରିଚୟ ଦେଇଯାଇଅଛନ୍ତି, ମାତ୍ର ଅନ୍ୟ ଔପନିବେଶିକମାନଙ୍କ ପରି ତାଙ୍କ ପରିବାରରେ ନିଜ ଜାତୀୟ ଭାଷା ଓ ସଂସ୍କୃତିର କୌଣସି ସମ୍ବନ୍ଧ ନଥିଲା; ତାଙ୍କ ପରିବାର ଉତ୍କଳୀୟ ଭାଷା ଓ ସଂସ୍କୃତି ଗ୍ରହଣକରି ଖାଣ୍ଟି ଓଡ଼ିଆ ହୋଇଯାଇଥିଲେ । ପଞ୍ଚମ ବର୍ଷ ବୟସରେ ମଧୁସୂଦନଙ୍କ ମାତୃବିୟୋଗ ହୋଇଥିଲା, ସେହି ନିଦାରୁଣ ସ୍ମୃତି ତାଙ୍କ କୋମଳ ଶିଶୁ ହୃଦୟରେ ଏପରି ଗଭୀର ରେଖାପାତ କରିଥିଲା ଯେ ଆମରଣ ସେ ତାହା ଭୁଲିପାରିନଥିଲେ ।

ପିତାଙ୍କର ସାମୟିକ କାର୍ଯ୍ୟକ୍ଷେତ୍ର ଭୁବନେଶ୍ୱରର ମଧ୍ୟଇଂରାଜୀ ବିଦ୍ୟାଳୟରେ କିଛିଦିନ ପଢ଼ିବା ପରେ ୧୮୬୧ ଖ୍ରୀଷ୍ଟାବ୍ଦରେ ସେ ପୁରୀ ଜିଲାସ୍କୁଲରୁ ଏଣ୍ଟ୍ରାନସ୍ ପରୀକ୍ଷାରେ ପ୍ରଶଂସା ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । କବିବର ରାଧାନାଥ ରାୟ ପୁରୀ ଜିଲାସ୍କୁଲରେ ମଧୁସୂଦନଙ୍କ ଶିକ୍ଷକ ଥିଲେ । ମଧୁସୂଦନ ତୀକ୍ଷ୍ଣ ମେଧା, ସୁଶୀଳତା ଓ ଆଦର୍ଶ ଚରିତ୍ର ଦ୍ୱାରା ଅଧ୍ୟାପକ ଓ ସହାଧ୍ୟାୟୀ ସମସ୍ତଙ୍କର ପରମ ପ୍ରୀତିପାତ୍ର ହୋଇଥିଲେ । ପୁରୀ ଚିରକାଳ ଉତ୍କଳରେ ସଂସ୍କୃତ ଆଲୋଚନାର ପୀଠସ୍ଥଳ । ରାଧାନାଥ ପ୍ରିୟଶିଷ୍ୟ ମଧୁସୂଦନଙ୍କ ସଙ୍ଗେ ମିଳିତ ହୋଇ ତତ୍କାଳୀନ ପଣ୍ଡିତମାନଙ୍କ ସାହାଯ୍ୟରେ ସଂସ୍କୃତ ଭାଷା ଶିକ୍ଷା କରିଥିଲେ । ଏହାହିଁ ଏ ଉଭୟଙ୍କର ଭାବି ସାହିତ୍ୟିକ ଜୀବନର ମୂଳଭିତ୍ତି । ସେପର୍ଯ୍ୟନ୍ତ କଟକରେ ଇଂରେଜୀ କଲେଜ ପ୍ରତିଷ୍ଠିତ ହୋଇନଥିଲା । କଟକ ହାଇସ୍କୁଲ ସଙ୍ଗରେ ଏଫ୍, ଏ, ଶ୍ରେଣୀମାନ

ଖୋଲଥିଲା, ମଧୁସୂଦନ ସେଠାରୁ ଏଫ୍, ଏ, ପରୀକ୍ଷାରେ ୧୮୭୧ ଖ୍ରୀଷ୍ଟାବ୍ଦରେ ଉତ୍ତୀର୍ଣ୍ଣ ହୋଇ ଅନ୍ୟ ଉଚ୍ଚତର ଶିକ୍ଷାର ସୁବିଧା ନ ଦେଖି ଅଗତ୍ୟା କର୍ମକ୍ଷେତ୍ର ଅନ୍ୱେଷଣ କଲେ ।

ଶିକ୍ଷା ବିଭାଗକୁ ହିଁ ସେ ନିଜ ରୁଚି ଅନୁରୂପ କର୍ମକ୍ଷେତ୍ରରୂପେ ବାଛିନେଲେ । ପ୍ରଥମେ ସେ ଯାଜପୁର ମଧ୍ୟଇଂରାଜୀ ସ୍କୁଲର ହେଡ୍‌ମାଷ୍ଟର ରୂପେ ମାସିକ ୪୫ଟଙ୍କା ବେତନରେ ନିଯୁକ୍ତ ହୋଇଥିଲେ । ସେତେବେଳେ ତାଙ୍କର ବୟସ ୧୮ ବର୍ଷ ମାତ୍ର । ସେଠାରେ ୧୨ ବର୍ଷ କର୍ମକରିବା ପରେ ୧୮୭୩ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଜିଲ୍ଲା ସ୍କୁଲର ୨ୟ ଶିକ୍ଷକ ପଦରେ ନିଯୁକ୍ତ ହୋଇ ସେଠାକୁ ଗଲେ । ସେତେବେଳେ ରାଧାନାଥ ବାଲେଶ୍ୱର ଶିକ୍ଷା-ବିଭାଗର ଡେପୁଟୀ ଇନ୍‌ସ୍‌ପେକ୍‌ଟର ଏବଂ ଫକୀରମୋହନ 'ସମ୍ବାଦବାହିକା' ସାପ୍ତାହିକ ସଂବାଦପତ୍ରର ସଂପାଦକ । ସେ ପର୍ଯ୍ୟନ୍ତ ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ହୋଇ ନଥାଏ । ଏହି ତିନିଜଣ ଉତ୍ସାହୀ ଯୁବକ ହିଁ ସେତେବେଳେ ବାଲେଶ୍ୱରରେ ସାହିତ୍ୟ ସାଧନାର ସୂତ୍ରପାତ କରିଥିଲେ । ୧୮୭୩ ରୁ ୧୯୦୯ ପର୍ଯ୍ୟନ୍ତ ପ୍ରାୟ ୩୬ ବର୍ଷ କାଳ ମଧୁସୂଦନ ଓଡ଼ିଶା ଶିକ୍ଷା ବିଭାଗରେ ପରିଦର୍ଶକ କର୍ମଚାରୀ-ରୂପରେ ଓ ଶିକ୍ଷକରୂପେ କାର୍ଯ୍ୟ କରିଥିଲେ । ତାଙ୍କ କର୍ମମୟ ଜୀବନର ଶେଷ ୩ ବର୍ଷ ସେ ଓଡ଼ିଶା ଶିକ୍ଷାବିଭାଗର ଇନ୍‌ସ୍‌ପେକ୍‌ଟର ହୋଇଥିଲେ, ଏହାହିଁ ସେତେବେଳେ ଶିକ୍ଷା-ବିଭାଗରେ ଦେଶୀଲୋକଙ୍କ ଉନ୍ନତିର ଶେଷ ସୀମା ଥିଲା । ପ୍ରଥମେ ମାସିକ ୪୫ ଟଙ୍କା ବେତନରେ ମଧ୍ୟଇଂରାଜୀ ସ୍କୁଲର ହେଡ୍‌ମାଷ୍ଟର ରୂପେ କାର୍ଯ୍ୟ ଆରମ୍ଭ କରି ସ୍ୱକୀୟ କର୍ମକୁଶଳତା ଓ କର୍ତ୍ତବ୍ୟ ନିଷ୍ଠା ଗୁଣରେ ଅବସର ଗ୍ରହଣ ସମୟକୁ ସେ ମାସିକ ୬୫୦ଟଙ୍କା ବେତନ ପାଉଥିଲେ । ତାଙ୍କର ସାହିତ୍ୟ-ସାଧନା, କର୍ତ୍ତବ୍ୟନିଷ୍ଠା ଓ ବିଶ୍ୱସ୍ତ-

ଭାବରେ ରାଜକାର୍ଯ୍ୟ ପରିଚାଳନା ଦେଖି ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ୧୯୦୭ ଖ୍ରୀଷ୍ଟାବ୍ଦରେ ତାଙ୍କୁ ସମ୍ମାନ ସୂଚକ 'ରାୟବାହାଦୁର' ଉପାଧି ପ୍ରଦାନ କରିଥିଲେ। ସରକାରୀ କର୍ମରୁ ଅବସର ନେବାପରେ ସେ ୩ ବର୍ଷ ମାତ୍ର ଜୀବିତ ଥିଲେ। ସେତେବେଳେ କଟକରେ ଇଂରାଜୀ ସ୍କୁଲ ସଂଖ୍ୟା ଅତ୍ୟଳ୍ପ ଥିଲା। ଏହି ଅଭାବ ପୂରଣ କରିବାପାଇଁ ସେ ୧୮୮୧ ଖ୍ରୀଷ୍ଟାବ୍ଦରେ କଟକରେ 'ଟାଉନ୍ ସ୍କୁଲ' ନାମରେ ଗୋଟିଏ ମଧ୍ୟଇଂରାଜୀ ସ୍କୁଲ ପ୍ରତିଷ୍ଠା କରିଥିଲେ। କିଛିଦିନ ପରେ ସରକାରଙ୍କ ଠାରୁ କୌଣସି ସାହାଯ୍ୟ ନ ପାଇ ସୁଦ୍ଧା ନିଜ ଚେଷ୍ଟାରେ ସେ ତାହାକୁ ହାଇସ୍କୁଲରେ ପରିଣତ କରି ପାରିଥିଲେ। ମାତୃଭୂମିରେ ଶିକ୍ଷା-ପ୍ରସାର ପାଇଁ ତାଙ୍କର କିପରି ଆନ୍ତରିକ ଯତ୍ନ ଥିଲା, ଏଥିରୁ ତାହା ସହଜରେ ଅନୁମାନ କରାଯାଇପାରେ। ବର୍ତ୍ତମାନ ତାହା 'ଭକ୍ତ ମଧୁ ବିଦ୍ୟାପୀଠ' ନାମରେ ପରିଚିତ। ୧୯୧୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ପ୍ରାୟ ୭୦ ବର୍ଷ ବୟସରେ ମଧୁସୂଦନ ସଂସାରରୁ ବିଦାୟ ନେଲେ।

ତାଙ୍କ ଜୀବନର ପ୍ରାୟ ୨୦ ବର୍ଷ ପ୍ରତ୍ୟକ୍ଷ ଶିକ୍ଷାଦାନ କାର୍ଯ୍ୟରେ ଅତିବାହିତ ହୋଇଥିଲା। ତନ୍ମଧ୍ୟରୁ ପ୍ରାୟ ୧୩ ବର୍ଷ କଟକ ଟ୍ରେନିଂ ସ୍କୁଲରେ, ଯେ ତେବେଳେ ଇଂରାଜୀ ସ୍କୁଲ କଲେଜ ସଂଖ୍ୟା ଏ ଅଞ୍ଚଳରେ ଅତ୍ୟଳ୍ପ ଥିଲା, ସେତେବେଳେ ପାଶ୍ଚାତ୍ୟ ଶିକ୍ଷାର ଭାବଧାରା ପ୍ରଚାର ଉଦ୍ଦେଶ୍ୟରେ ନର୍ମାଲ ସ୍କୁଲ ନାମରେ ଏହାର ପ୍ରତିଷ୍ଠା ହୋଇଥିଲା ଏବଂ ମାତୃଭାଷା ମାଧ୍ୟମରେ ସାଧାରଣ ବିଷୟଜ୍ଞାନ ଦେବା ସଙ୍ଗେ ସଙ୍ଗେ ଏଠାରେ ଅଧ୍ୟାପନାର ପ୍ରଣାଳୀ ମଧ୍ୟ ଶିକ୍ଷା ଦିଆଯାଉଥିଲା। ଏଠାରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ବହୁ ବର୍ଷଯାଏ ଏ ଅଞ୍ଚଳର ପ୍ରାଥମିକ ସ୍କୁଲ ଏବଂ ସ୍କୁଲ ଓଡ଼ିଆ ଭାଷାରେ ସାହିତ୍ୟ, ଗଣିତ, ଭୂଗୋଳ, ଇତିହାସ ପ୍ରଭୃତି ସମସ୍ତ ବିଷୟ ପଢ଼ାଉଥିଲେ।

ତେଣୁ କଟକ ଟ୍ରେନିଂ ସ୍କୁଲ ସେତେବେଳେ ସମଗ୍ର ଓଡ଼ିଶାରେ ଓଡ଼ିଆ ଶିକ୍ଷାର ଏକମାତ୍ର ପୀଠସ୍ଥଳ ଥିଲା । ବହୁ ବର୍ଷଯାଏ ଏହି ସ୍କୁଲ ଯେଉଁ ପ୍ରତିଷ୍ଠା ଲାଭ କରିଥିଲା, ତାହାର ମୂଳରେ ଥିଲେ ଅଧ୍ୟକ୍ଷ ମଧୁସୂଦନ । ତାଙ୍କ ଆନ୍ତରିକ ଯତ୍ନ ଓ ଉତ୍ସାହରେ ଶିକ୍ଷାର ବିଶେଷତଃ ସାହିତ୍ୟ ଶିକ୍ଷାର ଏପରି ଗୋଟିଏ ପ୍ରଶାନ୍ତ, ପବିତ୍ର ବାୟୁମଣ୍ଡଳ ସେଠାରେ ସୃଷ୍ଟି ହୋଇଥିଲା, ତାହାର ପ୍ରତ୍ୟକ୍ଷ ଅନୁଭୂତି ପାଇଁ ସେ ସମୟର ବହୁ ଉଚ୍ଚଶିକ୍ଷିତ ଭଦ୍ରଲୋକ ସେଠାକୁ ଆସୁଥିଲେ । ପୁରାଣ ଶାସ୍ତ୍ରମାନଙ୍କରେ ପ୍ରାଚୀନ ଭାରତର 'ଗୁରୁକୁଳ ଆଶ୍ରମ'ମାନଙ୍କରେ ଯେଉଁ ଚିତ୍ର ଅଙ୍କିତ ହୋଇଅଛି, ଏ ନବଯୁଗରେ ସେଠାରେ ସେହି ଚିତ୍ର ଦେଖି ଦର୍ଶକମାନେ ମୁଗ୍ଧ ହୋଇ ଫେରୁଥିଲେ । ଏହି ଦର୍ଶକମାନଙ୍କ ମଧ୍ୟରେ ଥିଲେ ବାମଣ୍ଡାର ସୁନାମଧନ୍ୟ ନରପତି ସାର୍ ବାସୁଦେବ ସୁଢଳଦେବ ଅନ୍ୟତମ । ପ୍ରାୟ ୮୦ ଜଣ ଅନ୍ତେବାସୀଙ୍କ ସହ ଋଷିପ୍ରତିମ ମଧୁସୂଦନ 'କୁଳପତି' ରୂପେ ସେହି ଆଶ୍ରମରେ ଅବସ୍ଥାନ କରୁଥିଲେ । କି ସରଳ ଅମାୟିକ ବ୍ୟବହାର ! କି ଉଦାର ଦୟା । କି ଅସାଂପ୍ରଦାୟିକ ଉଦାରତା ! କି ନିଷ୍କପଟ ଅତିଥେୟତା ! ଏଥି ମଧ୍ୟରୁ ବହୁକାଳ ଅତିବାହିତ ହୋଇଥିଲେ ସୁଦ୍ଧା, ସେ ସବୁର ପ୍ରତିଚ୍ଛାୟା ଚଳଚ୍ଚିତ୍ରର ଦୃଶ୍ୟାବଳୀପରି ଅଜ୍ଞ ମାନସ-ଚକ୍ଷୁ ସମକ୍ଷରେ ଅବଭାସିତ ହୋଇ ଉଠୁଅଛି । ସେ ସ୍ୱୟଂ ଉଚ୍ଚ ଶ୍ରେଣୀମାନଙ୍କରେ ସାହିତ୍ୟ ଓ ସଂସ୍କୃତ ଅଧ୍ୟାପନା କରୁଥିଲେ । ତାଙ୍କର ବ୍ୟାଖ୍ୟା କୌଶଳ ଓ ପ୍ରକାଶଭଙ୍ଗୀ ଥରେ ଯାହାଙ୍କର ଶ୍ରୁତି ପଥାରୂଢ଼ ହୋଇଅଛି, ସେ ଆଜୀବନ ତାହାକୁ ସ୍ମୃତିରେ ସଞ୍ଚାଳି କରି ରଖିଅଛନ୍ତି । ଅଗାଧପାଣ୍ଡିତ୍ୟ, ନୀତିମୟ ଦିବ୍ୟ ଜୀବନ, ମାର୍ଜିତ ରୁଚି ଓ ପବିତ୍ର ଚରିତ୍ରବଳର ଯେଉଁ ମନୋହର

ଆଦର୍ଶ ସେ ତାଙ୍କର ଅନ୍ତେବାସୀମାନଙ୍କ ସମ୍ମୁଖରେ ଧାରଣ କରିଥିଲେ, ତାହାକୁ ଧ୍ରୁବ ତାରାରୂପେ ମନେକରି ଅଦ୍ୟାପି ସେମାନେ ଜୀବନତରୀ ସଂସାର-ସାଗରରେ ପରିଚାଳିତ କରୁଅଛନ୍ତି ।

ମଧୁସୂଦନଙ୍କ ସାହିତ୍ୟିକ ପ୍ରତିଭା ବହୁତୋମୁଖୀ; ସେ କୌଣସି ମହା କାବ୍ୟ ବା ଖଣ୍ଡକାବ୍ୟର ପ୍ରଣେତା ନୁହନ୍ତି । ତାଙ୍କର ଅଧିକାଂଶ କବିତା ପରସ୍ପର ବିଚ୍ଛିନ୍ନ ଏବଂ ଆଧ୍ୟାତ୍ମିକ ଦୃଷ୍ଟିରେ ଲିଖିତ । ମୌଳିକ କାବ୍ୟ ବା ନାଟକ ଲେଖିଥିଲେ ସେ ଯେଉଁ କୀର୍ତ୍ତିର ଅଧିକାରୀ ହୋଇଥାଆନ୍ତେ, ଏହି ସବୁ ବିଚ୍ଛିନ୍ନ କବିତା ବା stray poems ଲେଖି ସେ ଉତ୍କଳସାହିତ୍ୟ କ୍ଷେତ୍ରରେ ତହିଁରୁ ଅଧିକ ଖ୍ୟାତି ବା ପ୍ରତିଷ୍ଠା ଲାଭ କରି ଯାଇଅଛନ୍ତି । ତାଙ୍କର ଅଧିକାଂଶ ଲେଖା ଶାନ୍ତ ଏବଂ କରୁଣ ରସାତ୍ମକ । ଅଦିରସର ସୀମା ସୁଦ୍ଧା ସେ ସ୍ପର୍ଶ କରିନାହାନ୍ତି । ମଧୁସୂଦନ ହିଁ ଓଡ଼ିଆ ଗଦ୍ୟ-ସାହିତ୍ୟର ସ୍ରଷ୍ଟା; ତାଙ୍କର ଗଦ୍ୟ ରଚନାବଳୀ ଗିରି ଗହ୍ୱରରୁ ନିଃସୃତ ସ୍ୱଚ୍ଛ ଜଳଧାରା ପରି, ତହିଁରେ କୁତ୍ରାପି କୃତ୍ରିମ ଶବ୍ଦ-ବିନ୍ୟାସ ନାହିଁ । ଭାଷାରେ ଗଭୀର ପାଣ୍ଡିତ୍ୟ ନଥିଲେ, ଏଭଳି ଭାବୋଦ୍ଦୀପକ ଶବ୍ଦ ବିନ୍ୟାସ କେହି କରିପାରିବେ ନାହିଁ । ଏହି ହେତୁରୁ ଓଡ଼ିଶା ଶିକ୍ଷା ବିଭାଗ ବହୁ ବର୍ଷଯାଏ ତାଙ୍କ ଲିଖିତ ଗଦ୍ୟ ଓ ପଦ୍ୟକୁ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ କରୁଥିଲେ । ପାଠ୍ୟ-ପୁସ୍ତକ ଛଡ଼ା ସେ ଅନେକ ନୀତିପୂର୍ଣ୍ଣ ଉପଦେଶ, ଚତୁର୍ଦ୍ଦଶପଦୀ କବିତା (sonnet), ଶୋକ ସଂଗୀତ, ଜାତୀୟସଂଗୀତ ପ୍ରଭୃତି ମଧ୍ୟ ରଚନା କରିଥିଲେ । ତତ୍ପ୍ରଣୀତ ଉତ୍କଳଗାଥା, ଭାରତ ଭାବନା ପ୍ରଭୃତି ପରି ଜାତୀୟ ଭାବୋଦ୍ଦୀପକ କବିତା ଆମ ଭାଷାରେ ବିରଳ କହିଲେ ଚଳେ । ମାତ୍ର ଏହା ସେ ସବୁ ଆଲୋଚନାର ସ୍ଥାନ

ନୁହେଁ । କର୍ମ-ଜୀବନର ଅବସ୍ଥରେ ସେ ନିଜ ଜୀବନର ଲକ୍ଷ୍ୟରୂପେ ନିର୍ଦ୍ଦେଶ କରିଥିଲେ—

ମାତୃଭୂମି ମାତୃଭାଷା କରସ୍ତୁ ଜନନୀ,
ସେବି ତାଙ୍କୁ ଭକ୍ତିଭରେ ଦିବସ ରଜନୀ;
ଏ ମାନବ ଜନ୍ମ ହେବ ସଫଳ ମୋହର,
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର ।

ଆଦର୍ଶ ଶିକ୍ଷକମାନେ ହିଁ ଜନ୍ମଭୂମିର ପ୍ରକୃତ ସେବକ । ଅଜ୍ଞାନାନ୍ଧ ଶତ ଶତ ଦେଶବାସୀଙ୍କର ଜ୍ଞାନଚକ୍ଷୁ ଉନ୍ମୀଳିତ କରିବା ଏବଂ ନିଜର ସମୁଚ୍ଚ ନୈତିକ ଚରିତ୍ର ପ୍ରଭାବରେ ଦେଶବାସୀ ଶତ ଶତ ନରନାରୀଙ୍କୁ ଆଦର୍ଶ ନାଗରିକରୂପେ ଗଢ଼ିବା ସେମାନଙ୍କର କାର୍ଯ୍ୟ । ପ୍ରାଚୀନ ଭାରତରେ ଏହି ଗୁରୁଦାୟିତ୍ୱ ତପୋନିରତ ଋଷିମାନଙ୍କ ଉପରେ ଅର୍ପିତ ହୋଇଥିଲା । ସମାଜରେ ଶିକ୍ଷକମାନଙ୍କ ଆସନ କିପରି ଥିଲେ, ଏଥିରୁ ସହଜରେ ଅନୁମିତ ହେବ ।

ଆମ ପ୍ରାଚୀନ ସାହିତ୍ୟ ସମୃଦ୍ଧ ଥିଲା; ତାହାର ଯେଉଁ ଯୁଗୋଚିତ ପରିବର୍ତ୍ତନ ପ୍ରୟୋଜନ ହେଲା, ତାହା ସଂପନ୍ନ କରିବାକୁ ସତେ ଯେପରି ମଧୁସୂଦନ ଉତ୍କଳର ଅବତୀର୍ଣ୍ଣ ହୋଇଥିଲେ । ଏହି ଭାବରେ ମାତୃଭୂମି ଓ ମାତୃଭାଷାର ସେବା କରି ମାନବ ଜୀବନ ଧାରଣକୁ ସେ ସଫଳ କରି ଯାଇଅଛନ୍ତି ।

## ଧର୍ମ ଜୀବନ

ଧର୍ମକ୍ଷେତ୍ର ପୁରୁଷୋତ୍ତମରେ ହିଁ ମଧୁସୂଦନଙ୍କ ବାଲ୍ୟ ଏବଂ କୈଶୋର ଅତିବାହିତ ହୋଇଥିଲା । ଅନ୍ୟ ଧର୍ମକ୍ଷେତ୍ରମାନଙ୍କପରି

ଏ ସ୍ଥାନର ବାତାବରଣ ଶରତକାଳ ଅସ୍ତିତ୍ୱତା ପୂର୍ଣ୍ଣ । ଏପରି ପରିବେଷ୍ଟନୀ ମଧ୍ୟରେ ରହିଲେ ସରଳ ପ୍ରାଣରେ ଧର୍ମଭାବ ସ୍ୱତଃ ଉଦ୍ବୁଦ୍ଧ ହୋଇଉଠିବା ଅତି ସ୍ୱାଭାବିକ । ପିଲାଦିନେ ପ୍ରତ୍ୟହ ଶିବ ଦର୍ଶନ ନ କରି ସେ ଜଳସ୍ପର୍ଶ କରୁ ନ ଥିଲେ । ବୟୋବୃଦ୍ଧି ସହ ଧର୍ମର ପ୍ରକୃତ ସ୍ୱରୂପ ଜାଣିବା ପାଇଁ ତାଙ୍କ ହୃଦୟରେ ଧର୍ମଜିଜ୍ଞାସା ବୃତ୍ତି ପ୍ରବଳ ହୋଇ ଉଠିଥିଲା ମାତ୍ର ସାମ୍ପ୍ରଦାୟିକ ମତପୂର୍ଣ୍ଣ ବାୟୁମଣ୍ଡଳରେ ତାଙ୍କର ସେ ପିପାସା ନିବାରିତ ହୋଇ ନ ଥିଲା । ତାଙ୍କ ଜୀବନର କାର୍ଯ୍ୟକଳାପ ଦେଖି ମନେହୁଏ, ବିଶୁଦ୍ଧ ସତ୍ତ୍ୱଗୁଣ ନେଇ ସେ ମାତୃ ଗର୍ଭରୁ ଭୂମିଷ୍ଠ ହୋଇଥିଲେ । ସାମୟିକ ବାତାବରଣରେ ସେ ଗୁଣ ବିକଶିତ ହୋଇପାରି ନ ଥିଲା ଓ ଯଥାକାଳରେ ସୁଯୋଗ ଲାଭ କରି ଅନ୍ତର୍ଯ୍ୟାମୀଙ୍କ ଦୟାରୁ ତାହାର ବିକାଶ ହୋଇଥିଲା ।

କଟକରେ ଏଫ୍, ଏ, ପଢ଼ିବାବେଳେ ସେ ଭିନ୍ନ ଧର୍ମାବଲମ୍ବୀ ଓ ଭିନ୍ନ ମତାବଲମ୍ବୀ ବହୁ ସହାଧ୍ୟାୟୀ ଓ ଅଧ୍ୟାପକଙ୍କ ସଂସର୍ଗରେ ଆସିଲେ । ନବୀନ ଆଲୋକ ଲାଭରେ ସମସ୍ତଙ୍କ ପ୍ରାଣରେ ରକ୍ଷଣଶୀଳତା ବିପକ୍ଷରେ ସ୍ୱାଧୀନ ମନୋବୃତ୍ତି ଜାଗରିତ ହୋଇ ଉଠିଥିଲା । ଉତ୍କଳଖଣ୍ଡରେ ଏହି ମନୋବୃତ୍ତି ପ୍ରସାରିତ ହେବାର ପ୍ରାୟ ଏକଶତ ବର୍ଷ ପୂର୍ବେ ବଙ୍ଗ ଦେଶର ପ୍ରଧାନ ନଗରୀ କଲିକତା ପାଶ୍ଚାତ୍ୟ ଦେଶବାସୀଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲା ଏବଂ ସେଠାରେ ଧର୍ମ ବିଷୟକ ରକ୍ଷଣଶୀଳତା ବିରୋଧରେ ତୁମୁଳ ବିପ୍ଳବ ଆରମ୍ଭ ହୋଇଥିଲା । ସେତେବେଳେ ଓଡ଼ିଶା ରାଜନୀତିକ ବ୍ୟାପାରରେ ବଙ୍ଗଳାର ଅନ୍ତର୍ଭୁକ୍ତ ଥିବାରୁ ବଙ୍ଗୀୟମାନେ ହିଁ ଏ ପ୍ରଦେଶରେ ପାଶ୍ଚାତ୍ୟ ଶିକ୍ଷା ପ୍ରଚାରିତ କରିଥିଲେ; ତେଣୁ ସେମାନଙ୍କ ଚିନ୍ତାଧାରା ଉତ୍କଳର ନବୀନ ଯୁବକମାନଙ୍କ

ହୃଦୟରେ ଅତି ସହଜରେ ପ୍ରବେଶ ଲାଭ କରିଥିଲା । ଏହି ଧର୍ମ ବିପ୍ଳବ ଓ ସମାଜ ବିପ୍ଳବର ପରିଣାମରେ ବଙ୍ଗଳାରେ 'ବ୍ରାହ୍ମ-ସମାଜ'ର ସୃଷ୍ଟି । ୧୮୨୯ ଖ୍ରୀଷ୍ଟାବ୍ଦରେ ମହାତ୍ମା ରାଜା ରାମମୋହନ ରାୟ ଏହି ନୂତନ ସମାଜର ପ୍ରତିଷ୍ଠା କରିଥିଲେ । ସେ ଯେପରି ନାନା ଶାସ୍ତ୍ରରେ ସୁପଣ୍ଡିତ ସେହିପରି ଦୂରଦର୍ଶୀ ଥିଲେ । ଧର୍ମର ମୂଳତତ୍ତ୍ୱ ଜାଣିବାପାଇଁ ସେ ନାନାଦେଶ ଭ୍ରମଣ କରିଥିଲେ । ସେତେବେଳେ ବଙ୍ଗଳାର ଅନେକ ନବ୍ୟ ଶିକ୍ଷାପ୍ରାପ୍ତ ସୁପଣ୍ଡିତ ମନୀଷୀ ରାମମୋହନଙ୍କ ମତ ଗ୍ରହଣ କରି ରକ୍ଷଣଶୀଳ ହିନ୍ଦୁ ସମାଜରୁ ପୃଥକ୍ ହୋଇ ଯାଇଥିଲେ । ଓଡ଼ିଶାରେ ମଧୁସୂଦନ ହିଁ ପ୍ରଥମେ ଏ ମତ ଗ୍ରହଣ କରିଥିଲେ ଏବଂ ପରେ ପ୍ୟାରୀମୋହନ ଆଚାର୍ଯ୍ୟ, ବ୍ୟାସକବି ଫକୀର ମୋହନ, ସାହିତ୍ୟପ୍ରାଣ ବିଶ୍ୱନାଥ କର ପ୍ରଭୃତି ଉତ୍କଳର ଆଉ କେତେଜଣ ବିଶିଷ୍ଟ ଲୋକ ମଧ୍ୟ ଏହି ପଥର ପଥିକ ହୋଇଥିଲେ । 'ବ୍ରହ୍ମ' ଏହା ଗୋଟିଏ ବୈଦିକ ଶବ୍ଦ । ବ୍ରହ୍ମ ଯେଉଁମାନଙ୍କର ଉପାସ୍ୟ ଦେବତା ସେମାନେ 'ବ୍ରାହ୍ମ' । ବ୍ରହ୍ମ ଶବ୍ଦର ଅର୍ଥ ବିଶ୍ୱ ବ୍ରହ୍ମାଣ୍ଡ ବ୍ୟାପି ଚିତ୍‌ଶକ୍ତି । ଏଥିରୁ ବୁଝାଯାଉଅଛି ବ୍ରାହ୍ମମାନେ ବୈଦିକ ମତାବଲମ୍ବୀ । କର୍ମକାଣ୍ଡ ଓ ଜ୍ଞାନକାଣ୍ଡ ଭେଦରେ ବେଦ ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ । ବେଦାନ୍ତ ବା ଉପନିଷଦ୍ ଅଂଶକୁ ଜ୍ଞାନକାଣ୍ଡ କୁହାଯାଏ । କାଳକ୍ରମେ ବୈଦିକ କର୍ମକାଣ୍ଡ ବା ଯଜ୍ଞବିଧି ବୈଦିକ ମତାବଲମ୍ବୀ ଅଧୁନିକ ହିନ୍ଦୁ ସମାଜରୁ ମଧ୍ୟ ଲୋପ ହୋଇଅଛି । ବ୍ରାହ୍ମଣମାନେ ବୈଦିକ ଜ୍ଞାନକାଣ୍ଡ ବା ଉପନିଷଦ୍ ଅଂଶକୁ ବିଶ୍ୱାସ କରନ୍ତି, କର୍ମକାଣ୍ଡରେ ସେମାନଙ୍କର ବିଶ୍ୱାସ ନାହିଁ । ପୌରାଣିକ ଯୁଗରେ ପ୍ରାଚୀନ ବୈଦିକ ଧର୍ମରେ ଜାତିବିଭାଗ ଓ ମୂର୍ତ୍ତିପୂଜା ପ୍ରଭୃତି ଯାହା ପ୍ରବେଶ କରିଅଛି ବ୍ରାହ୍ମମାନେ ତାହାର ବିରୋଧୀ । ତାଙ୍କ ବିଶ୍ୱାସରେ

ଏମାନେ ବୈଦିକ ଧର୍ମରେ ବିଶ୍ୱାସ କଲେହେଁ ଆଚାର ବ୍ୟବହାର ଓ ଖାଦ୍ୟପେୟ ବିଷୟରେ ପାଶ୍ଚାତ୍ୟ ଦେଶବାସୀଙ୍କ ଅନୁକରଣ କରନ୍ତି । ତେଣୁ ହିନ୍ଦୁସମାଜ ଏମାନଙ୍କୁ ଭିନ୍ନ ଧର୍ମାବଲମ୍ବୀ ବୋଲି ମନେ କରନ୍ତି । ପ୍ରକୃତରେ ବୁଝିଲେ ଆର୍ଯ୍ୟଧର୍ମର ମୌଳିକ ସତ୍ୟରେ ଯେତେବେଳେ ଏମାନେ ବିଶ୍ୱାସୀ, ସେତେବେଳେ ଏହା ଗୋଟିଏ ସ୍ୱତନ୍ତ୍ର ଧର୍ମ ନୁହେଁ, ଅଦ୍ୱୈତବାଦୀ, ଦ୍ୱୈତବାଦୀ, ବିଶିଷ୍ଟାଦ୍ୱୈତବାଦୀ, ଶୈବ, ବୈଷ୍ଣବ, ଶାକ୍ତ ପ୍ରଭୃତି ହିନ୍ଦୁଧର୍ମର ବିଭିନ୍ନ ସଂପ୍ରଦାୟ ପରି ଏହା ଗୋଟିଏ ସଂପ୍ରଦାୟ ବା ସମାଜ । ଆତ୍ମା, ପରମାତ୍ମା, ସ୍ୱର୍ଗ, ନରକ ପ୍ରଭୃତି ବିଷୟରେ ଯେଉଁ ବିଶ୍ୱାସ ବର୍ତ୍ତମାନ ହିନ୍ଦୁସମାଜରେ ପ୍ରଚଳିତ ଅଛି, ବ୍ରହ୍ମବାଦୀମାନେ ସେ ସମସ୍ତ ମଧ୍ୟ ସ୍ୱୀକାର କରନ୍ତି । ଉପନିଷଦ୍‌ମାନଙ୍କରେ ବ୍ରହ୍ମଙ୍କର ସଗୁଣ, ନିର୍ଗୁଣ ଉଭୟବିଧ ବର୍ଣ୍ଣନା ଦେଖାଯାଏ । ନିର୍ଗୁଣ ବ୍ରହ୍ମବାଦରେ ଭକ୍ତିର ସ୍ଥାନ ନାହିଁ । ଯାହା ନିର୍ଗୁଣ, ନିର୍ବିଶେଷ, ନିଷ୍କ୍ରିୟ ତାହାକୁ ସୃଷ୍ଟିକର୍ତ୍ତା, ପ୍ରଭୁ ବା ଈଶ୍ୱର ବୋଲି କିପରି କୁହାଯାଇପାରେ ? ଯାହା ମନୁଷ୍ୟ ଧାରଣାର ଅତୀତ, ତାଙ୍କ ସଙ୍ଗେ ଭକ୍ତିର ସମ୍ବନ୍ଧ ରହିପାରେ କି ? କିନ୍ତୁ ଭକ୍ତି ହିଁ ବ୍ରହ୍ମବାଦୀମାନଙ୍କର ସାଧନା ବା ବ୍ରହ୍ମ ପ୍ରାପ୍ତିର ଉପାୟ । ଏପରି ଅବସ୍ଥାରେ ଏହି ବ୍ରହ୍ମବାଦୀମାନେ ଯେ ସଗୁଣ ବ୍ରହ୍ମର ଉପାସକ, ଏଥିରେ ସନ୍ଦେହ ନାହିଁ ।

ବ୍ରହ୍ମସମାଜର ଅନ୍ତର୍ଭୁକ୍ତ ହେବାପରେ ମଧୁସୂଦନ ରକ୍ଷଣଶୀଳ ହିନ୍ଦୁସମାଜର ବିଷଦୃଷ୍ଟିରେ ପଡ଼ିଥିଲେ ଓ ହିନ୍ଦୁମାନେ ନାନାଭାବରେ ତାଙ୍କ ଅନିଷ୍ଟ ସାଧନ କରିବାରେ ଲାଗିଲେ । ମାତ୍ର ମଧୁସୂଦନ ବଜ୍ରଦୃଢ଼ ହୃଦୟରେ ସେମାନଙ୍କ ସମ୍ମୁଖୀନ ହୋଇ ସମସ୍ତ ବାଧାବିଘ୍ନ ଅତିକ୍ରମ କଲେ ଏବଂ ସ୍ୱୀୟ ଅବଲମ୍ବିତ

ମାର୍ଗରେ ସ୍ଥିର ଓ ଅଚଞ୍ଚଳ ରହିଲେ । ସେ ଦେଖିଲେ ସେ ଏକେଶ୍ୱରବାଦାତ୍ମକ ସନାତନ ବୈଦିକ ଧର୍ମ କ୍ରମେ ବହୁ ଦେବ ବାଦାତ୍ମକ ପୌରାଣିକ ଧର୍ମରେ ପରିଣତ ହୋଇଅଛି । ଧର୍ମର ସୁନିର୍ମଳ ପ୍ରବାହ ହରଦ୍ୱାରର ଗଙ୍ଗାସ୍ରୋତପରି ପବିତ୍ର ଓ ସ୍ୱଚ୍ଛ ନିମ୍ନଭୂମିରେ ବହୁଦୂର ପ୍ରବାହିତ ହେବା ପରେ ତାହା ଅବିଳ ହୋଇ ପଡ଼ିଅଛି ।

ବ୍ରାହ୍ମସମାଜ ଭୁକ୍ତ ହେବାପରେ ତାଙ୍କର ଖାଦ୍ୟପେୟ ଅନ୍ତର ବ୍ୟବହାରରେ କିଛିମାତ୍ର ପରିବର୍ତ୍ତନ ହୋଇ ନଥିଲା । ସେ ବୈଦିକ ଅର୍ଯ୍ୟଋଷିମାନଙ୍କ ଧର୍ମ-ଜୀବନର ଆଦର୍ଶ ରୂପେ ଗ୍ରହଣ କରିଥିଲେ ଏବଂ ସେମାନଙ୍କ ପ୍ରଦର୍ଶିତ ପନ୍ଥାରେ ନିଜର ସାଂସାରିକ ଜୀବନ ପରିଚାଳିତ କରୁଥିଲେ । ଧର୍ମଧ୍ୱଜତା ବା କପଟତା ମୁହୂର୍ତ୍ତକପାଇଁ ସୁଦ୍ଧା ତାଙ୍କ ହୃଦୟକୁ ସ୍ପର୍ଶ କରି ନଥିଲା । ସେ ବ୍ରାହ୍ମବାଦରେ ଦୀକ୍ଷିତ ହୋଇ ଅନ୍ତରର ସହିତ କପରି ନିଜ ଅଧ୍ୟାତ୍ମିକ ଜୀବନର ଉନ୍ନତି ସାଧନ କରିଥିଲେ, ତାଙ୍କ ସମ-ସାମୟିକ ଲୋକମାନେ ତାହା ସ୍ୱଚକ୍ଷୁରେ ଦେଖି ଅଛନ୍ତି; ତାଙ୍କ ଉତ୍ସାହରେ ହିଁ ସେତେବେଳେ କଟକରେ ବ୍ରାହ୍ମସମାଜ ପ୍ରତିଷ୍ଠିତ ହୋଇଥିଲା । ଦୀର୍ଘ ୩୫ ବର୍ଷ ସେ ଉକ୍ତ ସମାଜର ସଂପାଦକ, ସଦ୍ଭାବ ଓ ଅଗ୍ରହର ଭାବରେ କର୍ମ କରି ଯାଇଅଛନ୍ତି । ସମାଜରେ ତାଙ୍କ ଉପାସନା ଯଥାର୍ଥରେ ଉପଭୋଗ୍ୟ ଥିଲା । ତାଙ୍କ ଅନ୍ତେ-ବାସୀ ଭାବରେ ଅମ୍ଭେମାନେ ଅନେକ ଥର ସେହି ଉପାସନାରେ ଯୋଗ ଦେଇଥିଲୁ; କଟକର ଅନେକ ଉଚ୍ଚ ଶିକ୍ଷିତ ଅବ୍ରାହ୍ମ ଭଦ୍ରଲୋକ ମଧ୍ୟ ତାଙ୍କ ମୁଖ ନିସୃତ ପବିତ୍ର ଧର୍ମାମୃତ ପାନ କରିବା ପାଇଁ ନିୟମିତରୂପେ ସେଠାରେ ସମବେତ ହେଉଥିଲେ । ଅନ୍ତପ... ଉକ୍ତ ସମାଜର ଉପବେଶନ ଉଲକ୍ଷଣି ଏକ ବର୍ଷିକ

ସାତ୍ତ୍ୱିକ ଭାବରେ ସେ ଅଭିଭୂତ ହୋଇ ପଡୁଥିଲେ । ଓଁ ର ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ତାଙ୍କ ଚକ୍ଷୁରୁ ଅବିରଳ ଅଶ୍ରୁଧାରା ପ୍ରବାହିତ ହୋଇ ଶ୍ୱେତ ଶ୍ମଶ୍ରୁମଣ୍ଡଳ ଓ ପରିଧେୟ ବସ୍ତ୍ରକୁ ଆର୍ଦ୍ର କରି ଦେଉଥିଲା, ସମଗ୍ର ଶରୀର ରୋମାଞ୍ଚିତ ହୋଇ ଉଠୁଥିଲା ଏବଂ ବ୍ରାହ୍ମ ତେଜୋଦୀପ୍ତ ମୁଖରୁ କି ଏକ ଅନିର୍ବଚନୀୟ ଜ୍ୟୋତିଃସ୍ରୋତ ନିର୍ଗତ ହୋଇ ଶ୍ରୋତୃମଣ୍ଡଳୀକୁ ମୁହୂର୍ତ୍ତକ ମଧ୍ୟରେ ନିତ୍ୟ ଅନାମୟ ଧାମକୁ ନେଇ ଯାଉଥିଲା, ସେହି ସ୍ୱର୍ଗୀୟ ଦୃଶ୍ୟ ଯେଉଁମାନଙ୍କର ନେତ୍ରାଗତ ହୋଇଅଛି, ସେମାନେ ଆମରଣ ତାହା ବିସ୍ମୃତ ହେବେ ନାହିଁ ।

ତାଙ୍କ ଧର୍ମମୟ ଜୀବନ ସମ୍ବନ୍ଧରେ ଯାହା ଅମ୍ଭେମାନେ ସ୍ୱଚକ୍ଷୁରେ ଦେଖିଥିଲୁଁ, ଉପରେ ତାହାର ଆଭାସ ମାତ୍ର ପ୍ରଦାନ କରିଅଛୁଁ । ଧର୍ମଧାରଣା ଓ ଈଶ୍ୱରବିଶ୍ୱାସ ବିଷୟରେ ଜ୍ଞାନ-ଭକ୍ତି-ସୂତ୍ରରେ ଗ୍ରଥିତ ଯେଉଁ ଅମ୍ଳାନ ପଙ୍କଜମାଳା କବିତା ଆକାରରେ ଉତ୍କଳଭାରତୀଙ୍କ କଣ୍ଠ-ଦେଶରେ ସେ ଲମ୍ବାଇଦେଇ ଯାଇଛନ୍ତି, ସେ ସବୁର ପୁଣ୍ୟ-ସୌରଭ ଆମ ସାହିତ୍ୟ ଭଣ୍ଡାରକୁ ଚିରକାଳ ସୌରଭମୟ କରିବ । ଏକେଶ୍ୱରବାଦାତ୍ମକ ସେହିଭଳି କବିତା ଆମ ସାହିତ୍ୟରେ ଏକାନ୍ତ ଦୁର୍ଲଭ । ତାଙ୍କର ପ୍ରତ୍ୟେକ କବିତା ସ୍ୱର୍ଗୀୟ ଭାବଧାରାରେ ପୂର୍ଣ୍ଣ ଏବଂ ଆସ୍ତିକ୍ୟବୁଦ୍ଧିସଂପନ୍ନ, ପ୍ରତ୍ୟେକ ଲୋକର ସୁଖପାଠ୍ୟ । ତହିଁରୁ ୨।୪ଟି ମାତ୍ର ଉଦାହରଣ ଏଠାରେ ଦେବୁଁ । ସ୍ଥାନାଭାବରୁ ବିସ୍ତାରିତ ଆଲୋଚନା ଏଠାରେ ଅସମ୍ଭବ ।

ବ୍ରହ୍ମବାଦରେ ଦୀକ୍ଷିତ ହେବା ପରେ "ଈଶାବାସ୍ୟ ମିଦଂ ସର୍ବଂ ଯତ୍‌କିଞ୍ଚ ଜଗତ୍ୟାଂ ଜଗତ୍" ଉପନିଷଦର ଏହି ମହା-ସତ୍ୟ ଜୀବନରେ ଅନୁଭବ କରି ସମଗ୍ର ବିଶ୍ୱକୁ ସେ ବ୍ରହ୍ମମୟ ଦେଖିଥିଲେ ଏବଂ ଏହି ରୂପରେ ଅମୃତ ଭାବଧାରା ତାଙ୍କ ହୃଦୟ-

ଉଦରରୁ ନିଃସୃତ ହୋଇଥିଲା । 'ଆକାଶ ପ୍ରତି' ଓ 'ଜୀବନ ଚିନ୍ତା' ନାମକ କବିତାଦ୍ୱୟ ଲେଖିବାବେଳେ ତାଙ୍କର ବୟସ ୨୦।୨୧ରୁ ଅଧିକ ହୋଇ ନ ଥିଲା । ଏହି ଦୁଇଟି କବିତାରେ ସେ ଯେଉଁସବୁ ମହାଭାବ ପ୍ରକାଶ କରି ଯାଇଅଛନ୍ତି; ତରୁଣ ଜୀବନରେ ଧର୍ମର ପ୍ରକୃତ ସ୍ୱରୂପ ଜାଣିବା ପାଇଁ ସେ କିପରି ବ୍ୟାକୁଳ ହେଉଥିଲେ, ତାହା ତହିଁରୁ ସ୍ପଷ୍ଟ ଜଣାଯାଏ । ଯେତେଦୂର ଅନୁମାନ କରାଯାଏ, ଅନନ୍ତ ଆକାଶରୁ ହିଁ ସେ ପ୍ରଥମେ ଅନନ୍ତ ପରମେଶ୍ୱରଙ୍କ ପରିଚୟ ଲାଭ କରିଥିଲେ । ତରୁଣ ବୟସରେ ରାତ୍ରିକାଳୀନ ଅନନ୍ତ-ଆକାଶରେ "କୋଟି ବିଶ୍ୱ, କୋଟି ସୂର୍ଯ୍ୟ, କୋଟି ଚନ୍ଦ୍ର, ତାରା"ଙ୍କର ନିୟମିତ ଗତିବିଧି ପର୍ଯ୍ୟବେକ୍ଷଣ କରି ତହିଁରୁ ସେ ବିଶ୍ୱପତିଙ୍କର ପ୍ରତ୍ୟକ୍ଷ ଦର୍ଶନ ଲାଭ କରୁଥିଲେ, ଏଥିରେ ତାଙ୍କ ଚକ୍ଷୁ ଲୋତକ ବର୍ଷଣ କରୁଥିଲା ଏବଂ ବ୍ୟାକୁଳ ହୃଦୟରେ ସେ କାନ୍ଦି ଉଠୁଥିଲେ । ଏହା ତାଙ୍କ ମୁହଁରୁ ଆମ୍ଭେମାନେ ଶୁଣିଅଛୁଁ । ଏ କବିତାର ୨୨ପଦରେ ସେ ଏହା ହିଁ ପ୍ରକାଶ କରିଅଛନ୍ତି—

ମୁହୂର୍ତ୍ତିକେ ଯେନୁ ମୋତେ ରେ ମହାଗଗନ,
ପରମାତ୍ମା ପ୍ରାଣସଖା ମହେଶ ଶ୍ରୀପଦେ,

ମହା ନମ୍ରମାବେଶେ ଅଶ୍ରୁ ବର୍ଷେ ମୋ ନୟନ,
ଲଭଇ ମୁଁ ସ୍ୱରଗର ଅନନ୍ଦ ସମ୍ପଦେ ।

'ଜୀବନଚିନ୍ତା' କବିତାଟିରେ ସାଂସାରିକ ଭୋଗବିଳାସର ନଶ୍ୱରତା ବର୍ଣ୍ଣନା ସଙ୍ଗେ ସଙ୍ଗେ ସେ ଧର୍ମ-ଜୀବନ-ଲାଭର ଓ ଧର୍ମିକର ଆସ୍ୱାଦନର ସ୍ୱନିକ ଚିତ୍ର ପ୍ରଦାନ କରିଅଛନ୍ତି ।

ଧନମାନ ଆଦି ଯାହା,
ଭାଗ୍ୟଦେବୀ ପ୍ରସାଦରେ ଏ ଭବେ ଲଭନ୍ତି ନରେ
କାଳଚକ୍ର ଆବର୍ତ୍ତନେ କି ବେଗରେ ଅହା,
ପଳାନ୍ତି ସେ ଅନୁସରି ନିଜ ନିଜ ସ୍ପହା । ୮ ।

ପରିହରି ପାପ ପ୍ରଲୋଭନ,
ଉନ୍ମୂଳି ଚିର ବିଶ୍ୱାସ, ସ୍ୱାର୍ଥ ଅହଂକାର ନାଶ,
କର ରେ ହୃଦୟାକାଶ ନିର୍ମଳ ବଦନ,
ତେବେ ରେ ଲଭିବୁ ଧର୍ମରସ ଆସ୍ୱାଦନ । ୨୩ ।

ଛନ୍ଦମାଳା ଦ୍ୱିତୀୟ ଭାଗ ଆରମ୍ଭରେ ପ୍ରକାଶିତ 'ସ୍ତବ' କବିତାଟି ମୁଁ ବହୁବାର ପଢ଼ିଅଛି ଏବଂ ପ୍ରତିବାର ଏହା ମୋତେ ନୂତନ ବୋଲି ବୋଧ ହୋଇଅଛି । ଏଥିରେ ପାଣ୍ଡିତ୍ୟ ପ୍ରକାଶକ ଶବ୍ଦବିନ୍ୟାସ ନାହିଁ; ଅଛି କେବଳ ଭକ୍ତର ଭାବୋଚ୍ଛ୍ୱାସ ଏବଂ ଅନ୍ତରତମ ପ୍ରଦେଶର ଅନୁଭୂତି । ଯଥାର୍ଥରେ ଏପରି ସୁନ୍ଦର ସ୍ତବ ଆମ ସାହିତ୍ୟରେ ବିରଳ ।

କେବଳ ଶୁଷ୍କ ଭକ୍ତି ବଳରେ ଏଭଳି କବିତା ଲେଖି ହୁଏ-ନାହିଁ, ଏହା 'ପ୍ରାଣଯନ୍ତ୍ରରେ ନିନାଦିତ ଭକ୍ତି ରସନାର ସୁଧାମୟ ମନ୍ତ୍ର ।'

ତତ୍ପ୍ରଣୀତ 'କୁସୁମାଞ୍ଜଳି', 'ବସନ୍ତଗାଥା', 'ସଂଗୀତମାଳା' ଭକ୍ତି-ରସପୂର୍ଣ୍ଣ ମଧୁଚକ୍ର; କୁସୁମାଞ୍ଜଳିରେ 'ଋଷିପ୍ରାଣେ ଦେବାବତରଣ'ର ଯେଉଁ ଛବି ସେ ଅଙ୍କନ କରି ଯାଇଅଛନ୍ତି ତାହା ବୈଦିକ ଯୁଗର ଉପାସନା ପଦ୍ଧତିର ଗୋଟିଏ ମହନୀୟ ଦୃଶ୍ୟ । ହିମାଳୟ ପାଦଦେଶରେ ଉପଳ ଶଯ୍ୟାରେ ସରସ୍ୱତୀ ନଦୀ କଳନାଦରେ ପ୍ରବାହିତ ହେଉଅଛି । ରମଣୀୟ ଉଷାକାଳ, ପୂର୍ଣ୍ଣିମା

ଶରଦ ର ପ୍ରଭାତ; ଚନ୍ଦ୍ରତାର ନିର୍ମଳ ଜ୍ୟୋତି ସଙ୍ଗେ ଉଷାକାଳୀନ ରକ୍ତିମା ମିଶ୍ରିତ ହୋଇ ସେହି ଅରଣ୍ୟ ପ୍ରଦେଶ ସ୍ୱର୍ଗୀୟ ଦୃଶ୍ୟରେ ପରିପୂର୍ଣ୍ଣ । ଏହି ପବିତ୍ର ଉଷାକାଳରେ ହିରଣ୍ୟଗର୍ଭ ନାମା ଜଣେ ଯୁବକ ଋଷି ଉପାସନାରେ ଅଭିନିବିଷ୍ଟ । ଧ୍ୟାନ ବଳରେ ଋଷି ବିଶ୍ୱବ୍ୟାପୀ ବ୍ରହ୍ମସତ୍ତା ହୃଦୟରେ ଅନୁଭବ କରି ମହା ପ୍ରେମରେ ଅଭିଭୂତ ହୋଇ ପଡ଼ିଅଛନ୍ତି । 'ବିମଳ ଜ୍ୟୋତିର ପ୍ରଫୁଲ୍ଲ ପୁଷ୍କର' ପ୍ରାୟ ତାଙ୍କର ତୁଷାର-ଗୌର ବଦନମଣ୍ଡଳ ଗୌରବରେ ଦୀପ୍ତଅଛି ।

ତାଙ୍କ ଭାଷାରେ—

କି ମହା ତଡ଼ିତ-ସ୍ରୋତ ପଶି ଅଚମ୍ବିତେ
ଆପାଦମସ୍ତକ ଧାଇଁ ଧମନୀ ଶୋଣିତେ ।
ମହା ପୁଲକରେ ତନୁ ରୋମାଞ୍ଚ ପୂରିତ
କଦମ୍ବ କେଶର ପ୍ରାୟେ କେଶ କଣ୍ଟକିତ ।

× + + ×

ଧ୍ୟାନ ଶେଷରେ 'ଗୀର୍ବାଣ-ବିଭବ ତ୍ରିଷ୍ଟୁପ୍ ଗାୟତ୍ରୀ ସ୍ଥଳରେ ଋଷି ଅଭିନବ ସ୍ତବ ଆରମ୍ଭ କରି ଯାହା କହିଅଛନ୍ତି, ନିଜ ଭାଷାରେ ତାହା ବର୍ଣ୍ଣନା କରିବାକୁ ଯାଇ କବି ଗାଇଅଛନ୍ତି—

"ସେହି ମଧୁମୟ ଛନ୍ଦ ସେ ବାଣୀସମ୍ପଦ,
କାହୁଁ ତୁ ପାଇବୁ ଭାଷା ସେ ଅମୃତପଦ ।"

ଭକ୍ତ ହୃଦୟର ଭାବ ବର୍ଣ୍ଣନା କରିବାର ଭାଷା ଜଗତରେ ଦୁର୍ଲ୍ଲଭ ନୁହେଁ କି ?

× × × ×

ଏ କବିତା ଲେଖିବା ପୂର୍ବରୁ କବି 'ଉଦ୍‌ବୋଧନ' ନାମକ ଗୋଟିଏ କବିତାରେ ବାଣୀଙ୍କର ଆବାହନ କରି ଅଛନ୍ତି ।

ଯଥାର୍ଥରେ ବାଣୀରୂପିଣୀ ବିଶ୍ୱ-ଜନନୀଙ୍କର କରୁଣା ନ ହେଲେ କୌଣସି କବି ଅଭିନବ ରସପୂର୍ଣ୍ଣ ସେପରି କବିତା ଲେଖି ପାରିବେ ନାହିଁ ।

ଶେଷରେ ତାଙ୍କ ବାଲ୍ୟବନ୍ଧୁ ଫକୀରମୋହନଙ୍କ ଭାଷାରେ ଏ ପ୍ରବନ୍ଧର ଉପସଂହାର କରାଯାଇଅଛି ।

କେତେ ତପସ୍ୟାର ଫଳେ ଉତ୍କଳ ଜନନୀ,
ଲଭିଥିଲେ ଏକମାତ୍ର ପୁତ୍ର ଗୁଣମଣି ।
ଉତ୍କଳରେ ଯାହା ନାମ ଖ୍ୟାତ ଗ୍ରାମେ ଗ୍ରାମେ
ସେ ମଧୁସୂଦନ ବର୍ତ୍ତିମାନ ସ୍ୱର୍ଗଧାମେ ।
ସ୍କୁଲଶ ବରଷ କାଳ ତାହାଙ୍କୁ ମୁଁ ଜାଣେ
କରନ୍ତି କଥିତ ଗୁଣ ଅନୁଭବ ପ୍ରାଣେ ।
ଧନେ ହେଲେ ମଧୁ ଜଡ଼ ନାହିଁ ମିଥ୍ୟା କଥା
କେତେବେଳେ କାହା ମନେ ଦେଇନାହିଁ ବ୍ୟଥା ।
ପର ଉପକାର ପାଇଁ ସତ୍ୟ ହିଁ ଜୀବନ
ବାକ୍ୟର ଦୃଷ୍ଟାନ୍ତ ତହିଁ ଶ୍ରୀ ମଧୁସୂଦନ ।

× × × ×

ତାଙ୍କର କେତେଗୁଡ଼ିଏ କବିତାଂଶ ଅଦ୍ୟାପି ଉତ୍କଳୀୟ ଶିକ୍ଷିତ ସମାଜରେ ସୂକ୍ତି ବା ପ୍ରବଚନ ରୂପେ ପ୍ରଚଳିତ ଅଛି ।

(୧) ବୈକୁଣ୍ଠ ସମାନ ଅହା ଅଟେ ସେହି ଘର
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର । 'ପରିବାର' ।

(୨) କାଞ୍ଚନେ ବାଞ୍ଛା ନାହିଁ ମୋର
ମାଗଇ ପ୍ରଭୁ କୃପା ତୋର । 'ବର୍ଣ୍ଣବୋଧ' ।

(୩) ଅଜ ଛେ ରଚେଇନ୍ଦ୍ର ସନେ
କାଲ୍ ସେ ଫକୀର । 'ଜୀବନଚିନ୍ତା' ।

(୪) ଶରଣ୍ଣାଗ୍ରୀ ନୁହେଁ କିଛି ସକଳ ଅସ୍ଥିର,
ଜୀବନ ଯୌବନ ଧନ ପଦ୍ମପତ୍ର-ନୀର । 'ଶ୍ମଶାନ' ।

(୫) ତୋର ମଙ୍ଗଳ ବିଧାନ,
ଭବଅନ୍ତ ମରଣକୁ ଅମୃତ-ସୋପାନ । 'ସ୍ତବ'।

କାଳ ନିରବଧି, ପୃଥ୍ୱୀ ବିଶାଳ; ଏ ଦେଶରେ ମଧୁସୂଦନଙ୍କ ଅପେକ୍ଷା ବଡ଼ କବି ଓ ବିଦ୍ୱାନ୍ ଜନ୍ମିବେ ମାତ୍ର ତାଙ୍କ ଭଳି ସାଧକ-ଭକ୍ତ ଏ ଯୁଗରେ ଅଦ୍ୟାପି ଜନ୍ମି ନାହାନ୍ତି କିମ୍ବା ଅଦୂର-ଭବିଷ୍ୟତରେ ଜନ୍ମିବାର ସମ୍ଭାବନା ନାହିଁ ।



# ଭକ୍ତକବି ଭୀମଭୋଇ

ଭକ୍ତକବି ଭୀମଭୋଇ ରେଢ଼ାଖୋଲର ଗ୍ରାମଚହା ନାମକ ଗ୍ରାମରେ ଏକ ଦରିଦ୍ର କନ୍ଧ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଭୀମଭୋଇଙ୍କ ଜନ୍ମସ୍ଥାନ ସମ୍ବନ୍ଧରେ ଏପର୍ଯ୍ୟନ୍ତ ଆଲୋଚକଗଣ ସ୍ଥିର ମତ ଦେଇନାହାନ୍ତି । 'ପ୍ରାଚୀ ସମିତି' ତରଫରୁ ପ୍ରକାଶିତ ଭୀମଭୋଇଙ୍କର 'ସ୍ତୁତି ଚିନ୍ତାମଣି'ର ମୁଖବନ୍ଧରେ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ଭୀମଙ୍କର ଜନ୍ମ ମସିହା ୧୮୫୫ ବୋଲି ଉଲ୍ଲେଖ କରିଛନ୍ତି । ଶ୍ରୀଯୁକ୍ତ ବିନାୟକ ମିଶ୍ର ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ'ରେ ଭୀମଙ୍କର ଜନ୍ମ ମସିହା ୧୮୫୦ ବୋଲି ଅନୁମାନ କରିଛନ୍ତି । କିନ୍ତୁ ଭୀମଙ୍କର ମୃତ୍ୟୁ ମସିହା ୧୮୮୫ ବୋଲି ଉଭୟ ଆଲୋଚକ ଏକମତ । ଶ୍ରୀ ଚିତ୍ତରଞ୍ଜନ ଦାସ ତାଙ୍କର "ଓଡ଼ିଶାର ମହିମା ଧର୍ମ" ଗ୍ରନ୍ଥରେ ମଧ୍ୟ ଭକ୍ତ ଭୀମଭୋଇଙ୍କର ଜନ୍ମସ୍ଥାନ ସଂପର୍କରେ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ନ ହୋଇ ତାଙ୍କୁ ଗତ

ଶତାବ୍ଦୀର ମଧ୍ୟଭାଗର ଲୋକ ବୋଲି ଗ୍ରହଣ କରନ୍ତି । ତେଣୁ ଭୀମଭୋଇଙ୍କର ଜନ୍ମ ଓ ବାଲ୍ୟକାଳ ଆଲୋଚକମାନଙ୍କ ନିକଟରେ ଅସ୍ପଷ୍ଟ । ଭୀମଭୋଇଙ୍କର ରଚନାବଳୀରୁ ତାଙ୍କ ବାଲ୍ୟ ଓ କୈଶୋର ଜୀବନର ଯେଉଁ ବିବରଣ ମିଳେ, ତାକୁ ହିଁ ଆଲୋଚକମାନେ ପ୍ରମାଣରୂପେ ଏ ପର୍ଯ୍ୟନ୍ତ ସ୍ୱୀକୃତ ଦେଇ ଆସୁଛନ୍ତି । 'ସ୍ତୁତି ଚିନ୍ତାମଣି'ରେ କବି ଲେଖିଛନ୍ତି—

"ଏହି ପିଣ୍ଡପ୍ରାଣ ବହି ସହୁଥାଇ ଦୁଃଖସୁଖ ଯଥା ଅର୍ଥ ।
ତହିଁ ଜନ୍ମରୁ ଦିବସ ବହିଗଲା ହୋଇଲା ବରଷ ସାତ ।
କ୍ଷୁଧା ତୃଷା କଲେ ଭାଳଇ ବିକଳେ ଦଗଧି ହୁଅଇ କାଏ
ଅତି ଦୁଃଖ ମୁହିଁ ଦିନ ବଞ୍ଚି ଅଛୁ କଷ୍ଟରେ ଜୀବନ ପ୍ରାଏ ।
× × × +
ସପ୍ତ ବରଷରୁ ଅଷ୍ଟମ ନବମ ଦଶମ ଏଗାର ହେଲା
ବାର ବରଷରୁ ବନ୍ଧୁଙ୍କ ସଙ୍ଗରେ ବନେ ବୁଲି ଦିନ ଗଲା ।
+ + + +
ବୁଲୁଥାଇ ବନେ ନିତି ପ୍ରତିଦିନେ ବତ୍ସାକୁ ସଙ୍ଗରେ ଘେନି
କ୍ଷୁଧା ତୃଷା କଲେ ଜୀବନ ବିକଳେ ପିଉଥାଇ ଝର ପାଣି ।
ଲୋହ ନାହିଁ ରକ୍ତ ବହୁଥାଇ ମୋର ଶ୍ରୀହସ୍ତେ ଦିଅଇ ପୋଛି
କେହି ନଜାଣନ୍ତି ଶ୍ରୀଗୁରୁ ଜାଣନ୍ତି ଯେତେ କଷ୍ଟ ପାଇଅଛି ।
(୨୧ଶ ଓ ୨୨ଶ ବୋଲି)

କବିଙ୍କର ଏହି ଆତ୍ମବାଣୀରେ କୈଶୋର ଜୀବନର ଯେଉଁ ଇତିହାସ ଲିପିବଦ୍ଧ, ତାହା ଅତି କରୁଣ ଓ ମର୍ମସ୍ପର୍ଶୀ । ବହୁ ଦୁଃଖ ଦୁର୍ଦ୍ଦଶା ମଧ୍ୟରେ ଭୀମଙ୍କର ବାଲ୍ୟ ଓ କୈଶୋର ଜୀବନ

ଅତିବାହିତ ହୋଇଥିବାର ଚିହ୍ନ ତାଙ୍କ କବିତାର ବହୁ ପଂକ୍ତିରେ ମିଳିଥାଏ।

ଦୁଃଖଦାରିଦ୍ର୍ୟ ମଧ୍ୟରେ ଯେ ଭୀମଭୋଇଙ୍କର ଜୀବନ କେବଳ ଅତିବାହିତ ହୋଇଥିଲା, ତା’ନୁହେଁ, ସେ ଅନ୍ଧ ଥିବାରୁ ଜୀବନର ଏକ କରୁଣ ଅଭିଶାପ ବହନ କରି ଅସହାୟ ଜୀବନ-ପଥର ଯାତ୍ରୀ ହୋଇଥିଲେ। ଭୀମଭୋଇଙ୍କର ଅନ୍ଧତା ସଂପର୍କରେ ଅବଶ୍ୟ ବିଭିନ୍ନ ଆଲୋଚକ ଭିନ୍ନ ଭିନ୍ନ ମତ ପୋଷଣ କରିଛନ୍ତି। କେହି କେହି ଭୀମ ଜନ୍ମାନ୍ଧ ଥିଲେ ବୋଲି କହିଛନ୍ତି। ପୁଣି କେହି କେହି ଅନୁମାନ କରିଛନ୍ତି ଯେ ଭୀମ କୈଶୋର ବା ଯୌବନ କାଳରେ ଦୃଷ୍ଟିଶକ୍ତି ହରାଇଥିଲେ। ଏପରି ଅନୁମାନ ମଧ୍ୟ ଅଯୌକ୍ତିକ ନୁହେଁ। କାରଣ ‘ସ୍ତୁତି ଚିନ୍ତାମଣି’ରେ କବି ନିଜର ବାଲ୍ୟ ଓ କୈଶୋର ଜୀବନର ଯେଉଁ ବିବରଣୀ ଦେଇଛନ୍ତି ସେଥିରେ ସେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି ଯେ ଜନ୍ମର ଦୁଇବର୍ଷ ପରେ ତାଙ୍କର ‘ହେତୁବୁଦ୍ଧି’ ହୋଇଥିଲା ଏବଂ ତାଙ୍କର ‘ଦ୍ବାଦଶବର୍ଷ ସମ୍ପୂର୍ଣ୍ଣ’ ସମୟରେ ଜ୍ୟେଷ୍ଠ ମାସରେ “ଶଙ୍ଖଚକ୍ର ଚିହ୍ନ” ଧାରୀ “ଯୋଗୀପୁରୁଷ”—ଜଣେ ସ୍ୱାମୀ “ହସ୍ତରେ ଖପର ଧରି” “ଦିଅମାତା ଦିଅମାତା ଅନ୍ନଭିକ୍ଷା ଗୋଷ୍ଠାଗ୍ରହି” ବୋଲୁଥିବାର ସେ ‘ପ୍ରତ୍ୟକ୍ଷ’ରେ ଦେଖିଥିଲେ। କବିଙ୍କର ଏହି ବିବରଣୀ ଯଦି ସତ୍ୟ ହୋଇଥାଏ, ତେବେ ସେ ଜନ୍ମାନ୍ଧ ଥିବା ସତ୍ୟ ନୁହେଁ। ପୁଣି ଭୀମ ‘ସ୍ତୁତି ଚିନ୍ତାମଣି’ର (୭୧ଶ ବୋଲି) ଏହି ବିବରଣୀ ପରେ ପରେ ଉଲ୍ଲେଖ କରିଛନ୍ତି—

“ତେତେବେଳେ ମୁହିଁ ପାଶେ ଠିଆ ହୋଇ ଅଳପ ମୁଁ ଅଛି ଜାଣି
ଥାଳ ଘେନି ସ୍ୱାମୀ ଆପେ ମାଗୁଥିଲେ ଦିଅ ବାବୁ ମୋତେ ପାଣି।”

'ପ୍ରତ୍ୟକ୍ଷ ଦେଖିବା' ପରେ କବି ପ୍ରତ୍ୟକ୍ଷରେ ବା ସ୍ପଷ୍ଟ ଭାବରେ ନ ଶୁଣି ବା ନଜାଣି 'ଅଳ୍ପ ମୁଁ ଅଛୁ ଜାଣି' କହିବାଦ୍ୱାରା ନିଜ ଉନ୍ମାଦ ଅବସ୍ଥାର ସଂକେତ ହିଁ ଏତ ଦେଇଛନ୍ତି । ତେବେ ଅଧିକାଂଶ ଅଲୋଚକ ଭୀମଙ୍କୁ ଉନ୍ମାଦ ଥିବାର ଅନୁମାନ କରିଛନ୍ତି ।

ଯେ କୌଣସି ଭକ୍ତଙ୍କ ପରି ଭକ୍ତ ଭୀମଭୋଇଙ୍କର ଜୀବନ ନାନାପ୍ରକାର କମ୍ବଦନ୍ତୀ, ଐଶ୍ୱରିକ ଆଶୀର୍ବାଦ ଓ ଅଲୌକିକ ଘଟଣାରେ ପରିପୂର୍ଣ୍ଣ । କଥିତ ଅଛି, ଭୀମଭୋଇ ଜୀବନର ଦୁର-ବସ୍ଥାରେ ବିଚଳିତ ହୋଇ ପ୍ରାଣତ୍ୟାଗ କରିବାକୁ ଏକଦା କୃତସଂକଳ୍ପ ହୋଇଥିଲେ ଏବଂ ସେଥିପାଇଁ ଏକ କୂପଗର୍ଭରେ ଅପଣାକୁ ନିକ୍ଷିପ୍ତ କରିଥିଲେ । ତିନିଦିନ ତିନିରାତି ସେହି କୂପଗର୍ଭରେ ଭୀମ ପଡ଼ି ରହିଥିଲେ । ଅବଶେଷରେ ଭଗବାନ କୂପ ସମୀପରେ ଉପସ୍ଥିତ ହୋଇ ଭୀମଙ୍କୁ ସସ୍ନେହ ବାଣୀରେ ଅହ୍ୱାନ କରିଥିଲେ । ପ୍ରଭୁ ତାଙ୍କୁ ଦୃଷ୍ଟିଶକ୍ତି ପ୍ରଦାନ କରିବା ସଙ୍ଗେ କୂପଗର୍ଭରୁ ଉଦ୍ଧାର କଲେ ଓ ଭୀମଙ୍କୁ 'ମହିମାଧର୍ମ' ପ୍ରଚାର କରିବାକୁ ଆଦେଶ ଦେଲେ । ଭକ୍ତ ଭୀମଭୋଇ ପରେ ପୁଣି ସଂସାରର ବିଷୟ ଦର୍ଶନ ଏଡ଼ିବା ପାଇଁ ପୂର୍ବପରି ନିଜର ଅନ୍ଧ ଦଶା ବରଣ କରି ନେଇଥିଲେ । ଏହି ଘଟଣା ବିଶ୍ୱନାଥ ବାବାଙ୍କ ସତ୍ୟ-ମହିମାଧର୍ମର ଇତିହାସରେ ଲିପିବଦ୍ଧ ହୋଇଅଛି । ଭୀମଭୋଇଙ୍କ ଜୀବନର ଏହି ଘଟଣାକୁ ଅବଲମ୍ବନ କରି ଓଡ଼ିଶାର ସ୍ୱନାମଧନ୍ୟ କବି ଶ୍ରୀ ରାଧାମୋହନ ଗଡ଼ନାୟକ 'ଅନ୍ଧର ଚକ୍ଷୁଲାଭ' ଶୀର୍ଷକ ଏକ ଛଇ କୋଠୀର କବିତା ମଧ୍ୟ ଲେଖିଛନ୍ତି । ଭୀମଭୋଇଙ୍କର ରକ୍ତମାଂସର ଚର୍ମଚକ୍ଷୁ ପ୍ରଭୁଙ୍କ ଆଶୀର୍ବାଦରେ ସାଧାରଣ ଦୃଷ୍ଟିଶକ୍ତି ଲାଭ କରିଥିବାର କାହାଣୀ ହିଁ ଏତ କାଳ୍ପନିକ ହୋଇପାରେ, କିନ୍ତୁ ମହିମା ଗୋସାଇଁଙ୍କ ଅନୁଗ୍ରହ ବଳରେ ଜଣେ ଭକ୍ତର ଯଥାର୍ଥ

ଓ ଅସାଧାରଣ ଦିବ୍ୟଦୃଷ୍ଟି ଲାଭ କରିବାକୁ ଭୀମଭୋଇ ଯେ ସମର୍ଥ ହୋଇଥିଲେ, ଏକଥା କାଳ୍ପନିକ କିମ୍ବଦନ୍ତୀ ମାତ୍ର ନୁହେଁ, ତାଙ୍କ ଜୀବନରେ ତାହା ପ୍ରତିପାଦିତ ଏକ ପରମ ବିସ୍ମୟକର ସତ୍ୟ। କବି ଗଡ଼ନାୟକ ଅନ୍ଧ ଓ ଭକ୍ତ ଭୀମ ଭୋଇଙ୍କର ସେ ଦିବ୍ୟ ଦୃଷ୍ଟିଲାଭର ଅନୁଭୂତିର ଚିତ୍ର ଦେଇ କହିଛନ୍ତି,—

"ଧଶିଲା, ଦଗିଲା, ଅନ୍ଧତା ମୋ ଦୂର।
ଅନ୍ତରେ ଦେଖଇ ମୁହିଁ ସୃଷ୍ଟିର ସୌଷ୍ଠବ ବିରାଟ ବିପୁଳ।
ବିଶ୍ୱର ଯେତେକ ଯା ଦୃଶ୍ୟ। ଏତେଦିନେ ଚକ୍ଷୁ ଦେଲ ମହାମତି।"

ଇଂରାଜୀ କବି ମିଲ୍‌ଟନ୍ ନିଜ ଅନ୍ଧଦଶାରେ ବ୍ୟଥିତ ହୋଇ ଯେତେବେଳେ କହିଛନ୍ତି "The light of my life is spent" ଓ ଆମର ପଡ଼ୋଶୀ ବଙ୍ଗାଳୀ କବି ହେମଚନ୍ଦ୍ର ଯେତେବେଳେ ବ୍ୟଥାତୁର ଭାଷାରେ ଗାଇଛନ୍ତି,—

'ସବ୍ ଘୁଚିଲ ବଧି ହରେ ନୟନ ଚକ୍ଷୁନିଧି
ଅନ୍ଧକାରେ ଡୁବାଲେ ଅବନୀ,
ନା ପାବ ଦେଖିତେ ଆର ଏ ଭବେର ଶ୍ରୀଭାଣ୍ଡାର
ଚିର ଅସ୍ତମିତ ଦିନମଣି।'—ସେତେବେଳେ

ଆମର ଅନ୍ଧ ଓ ସାଧକ କବିଙ୍କର ଏ ଦିବ୍ୟଦୃଷ୍ଟିସଂପନ୍ନ ଅନୁଭୂତି ଭୀମଭୋଇଙ୍କର ଉଦାତ୍ତ ଚିନ୍ତାଧାରା ଓ ମହନୀୟ ହୃଦୟବତ୍ତାର ପରିଚୟ ଦିଏ ନାହିଁ କି ?

କବିଙ୍କର ସାଂସାରିକ ଜୀବନ ବିଶେଷ ବୈଚିତ୍ର୍ୟପୂର୍ଣ୍ଣ ନୁହେଁ। ବଲାଙ୍ଗୀର ଜିଲ୍ଲାର ସୋନପୁର ଅନ୍ତର୍ଗତ ଜଳାଅଟାଳି ଗ୍ରାମରେ ଭୀମଭୋଇ ତାଙ୍କର ଭକ୍ତ ଜୀବନ ଅତିବାହିତ କରିଥିଲେ। ସେ ଏକ ବ୍ରାହ୍ମଣ କନ୍ୟା ବିବାହ କରି ସାଂସାରିକ ସଂସାର ବୃକ୍ଷ କରି

ଜୀବନ ଯାପନ କରିଥିଲେ । ତାଙ୍କ ପତ୍ନୀଙ୍କର ନାମଥିଲା ଅନ୍ନପୂର୍ଣ୍ଣା । ୧୮୯୫ ଖ୍ରୀ: ଅ: ରେ ଭୀମଭୋଇଙ୍କର ସେହି ଖଲିଅପାଲି ଗ୍ରାମରେ ହିଁ ଦେହାବସାନ ହୋଇଥିଲା । ସେଠାରେ ଏପର୍ଯ୍ୟନ୍ତ ତାଙ୍କର ଓ ତାଙ୍କ ସ୍ତ୍ରୀଙ୍କର ସମାଧିମନ୍ଦିର ରହିଛି । ପୁଣି ଅନ୍ଧକବିଙ୍କର ରଚନାବଳୀକୁ ନକଲ କରିବା ସକାଶେ ମହିମା ଗୋସାଇଁଙ୍କ ଦ୍ୱାରା ପ୍ରେରିତ ହୋଇଥିବା ବାସୁଦେବ ପଣ୍ଡା ଓ ହରିପଣ୍ଡାଙ୍କର ସମାଧିମନ୍ଦିର ସେଠାରେ ବିଦ୍ୟମାନ ।

ଅନ୍ଧ ଭୀମଭୋଇ ପ୍ରଥମେ ଭକ୍ତ, ପରେ କବି; ପ୍ରଥମେ ଦ୍ରଷ୍ଟା, ପରେ ସ୍ରଷ୍ଟା । ଅନ୍ଧ ଭୀମଭୋଇଙ୍କର ଭକ୍ତିବିହ୍ୱଳ ଓ ଭାବତନ୍ମୟ ପ୍ରାଣର ଉଚ୍ଛ୍ୱସିତ ପରିପ୍ରକାଶ ହିଁ ତାଙ୍କର ରଚନାବଳୀ । 'ସ୍ତୁତି ଚିନ୍ତାମଣି' ହିଁ କବିଙ୍କର ଶ୍ରେଷ୍ଠ ଗ୍ରନ୍ଥ । ଏହାଛଡ଼ା ତାଙ୍କର 'ଆଦ୍ୟନ୍ତ ଗୀତା' 'ବ୍ରହ୍ମ ନିରୁପଣ ଗୀତା' 'ନିର୍ବେଦ ସାଧନ' 'ଅଷ୍ଟକବିହାରୀ ଗୀତା' 'ଚଉତିଶା' ଓ ଭଜନ ପ୍ରଭୃତି ରଚନା ମଧ୍ୟ ରହିଛି । କବି ଅନ୍ଧଦଶାରେ ନିଜର ଅସ୍ପୃଷ୍ଟ ଓ ଅଭାବ-ପୀଡ଼ିତ ପରିବେଶକୁ ଅତିକ୍ରମ କରି ପ୍ରତିଭାର ଅମ୍ଳାନ ସ୍ୱାକ୍ଷର ଅଜସ୍ର ରଚନାବଳୀ ଭିତରେ କିପରି ଅଙ୍କନ କରି ଯାଇଛନ୍ତି ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ଅବଶ୍ୟ ଭୀମଭୋଇଙ୍କର ଅଧିକାଂଶ ରଚନା ଧର୍ମ ଓ ଭକ୍ତି ଭାବରେ ଅନୁରଞ୍ଜିତ, ସ୍ଥଳବିଶେଷରେ ସଂକୀର୍ଣ୍ଣ ଓ ସାଂପ୍ରଦାୟିକ ମଧ୍ୟ, କିନ୍ତୁ ଜଣେ କବିର ଉଦାର, ମାନବିକ ଓ ସାର୍ବଜନୀନ ଦୃଷ୍ଟିଭଙ୍ଗୀର ପ୍ରତିଫଳନ ଓ ଅଭିବ୍ୟକ୍ତି ତାଙ୍କ ରଚନାର ଅନେକ ସ୍ଥଳରେ ଲକ୍ଷିତ ହୋଇଥାଏ । ସାରଳା, ବଳରାମ, ଜଗନ୍ନାଥ ଓ ଅଚ୍ୟୁତାନନ୍ଦଙ୍କ ପରି କବି ଭୀମ ଭୋଇ ଏକାଧାରରେ ଲୋକଶିକ୍ଷକ ଓ ସାହିତ୍ୟିକ । ଯେ କୌଣସି ଭକ୍ତ-କବିଙ୍କ ପରି ସେ ନିଜର କବିତ୍ୱକୁ ଶାଶ୍ୱତ ଅନୁଗ୍ରହ ବୋଲି

ଛାଡିଛନ୍ତି । ବିଶେଷତଃ ପଦ୍ମମା ଗୋସାଇଁଙ୍କର ଅନୁକମ୍ପା ବଳରେ ହିଁ ଭକ୍ତିତତ୍ତ୍ୱ-କ୍ଷେତ୍ରର ସ୍ଫୁରଣ ହୋଇଥିଲା ବୋଲି ଭୀମ ଭୋଇ ବିଶ୍ୱାସ କରିବା ସଙ୍ଗେ ନିଜର ବହୁ ରଚନା ମଧ୍ୟରେ ତାହା ସ୍ୱୀକାର ମଧ୍ୟ କରିଛନ୍ତି । ଏ ଧରଣର ବିଶ୍ୱାସ ଆଜିର ବୈଜ୍ଞାନିକ ଯୁଗରେ ଅବିଶ୍ୱାସ୍ୟ ହୁଏତ ହୋଇପାରେ ଏବଂ ତାହା ଅତୀତ ବା ମଧ୍ୟଯୁଗୀୟ ଭାବନା ବୋଲି ପରିତ୍ୟଜ୍ୟ ହୁଏତ ହୋଇପାରେ, କିନ୍ତୁ ଏଭଳି ବିଶ୍ୱାସ ମଧ୍ୟରେ ଭକ୍ତ ପ୍ରାଣର ଯେଉଁ ନିଷ୍ଠା, ଆନ୍ତରିକତା, ଈଶ୍ୱର-ନିର୍ଭରତା ବିଦ୍ୟମାନ ତାହା ଉପହାସର ବସ୍ତୁ ନୁହେଁ ।

ଯେଉଁ ଭକ୍ତକବି ନିଜ ଜୀବନକୁ ନର୍କ-ନିକ୍ଷିପ୍ତ କରି ବିଶ୍ୱ-ମାନବକୁ ବେଦନାମୁକ୍ତ କରିବାର ଅଭିଳାଷ ପ୍ରକାଶ କରିଯାଇଛନ୍ତି, ସେ କବିଙ୍କୁ ଓଡ଼ିଆ ସାହିତ୍ୟ ତ ଭୁଲିଯିବାର ନୁହେଁ, ମଣିଷ ଜାତିର ସାହିତ୍ୟରେ ମଧ୍ୟ ସେ ସ୍ମରଣୀୟ ଓ ବନ୍ଦନୀୟ ହେବା ଉଚିତ ।

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧାର ହେଉ ।
ଏକ ଖଣ୍ଡ ହାଡ଼ ବ୍ରହ୍ମାଏ ରୁଧିର ପୃଷ୍ଠେ ମାଉଁସ ଜାଣିଲି
ତେଣୁ କରି ସିନା ପ୍ରାଣିଙ୍କ ବିକଳ ସହି ନ ପାରଇ ମୁହିଁ ।"

(ସ୍ତୁତିଚିନ୍ତାମଣି)

ସମଗ୍ର ଓଡ଼ିଆ ସାହିତ୍ୟରେ ଏ ମହାନ୍ ବାଣୀ କେବଳ ଭୀମ ଭୋଇଙ୍କର, ଯେଉଁ ଭୀମ ଭୋଇ ଜାତିରେ କନ୍ଧ, ଜୀବନରେ ଅନ୍ଧ, ଅଧୁନିକ ତଥାକଥିତ ଶିକ୍ଷାର ଦ୍ୱାର ମଧ୍ୟ ଯାହାଙ୍କ ପାଇଁ ରୁଦ୍ଧ । ଭୀମ ଭୋଇଙ୍କର ରଚନାର ଭକ୍ତି-ବିଭବକୁ ବାଦ୍ ଦେଲେ ମଧ୍ୟ ମନୁଷ୍ୟ ଜାତି ପାଇଁ କବି ପ୍ରାଣର ଏହି ବେଦନା ମଧ୍ୟ,

ମାନବବଜାର ଏହି ମହାନ ମନ୍ତ୍ର ବେଦ ମନ୍ତ୍ରଠୁଁ ଅଧିକ ଗରୀୟାନ ।

ପୂର୍ବରୁ କହିଛୁ, ଭୀମ ଭୋଇ ପ୍ରଥମେ ଭକ୍ତ ହୋଇଥିବାରୁ ତାଙ୍କ ରଚନାବଳୀ ସ୍ୱଧର୍ମର କଷାୟବସ୍ତ୍ର ପରିଧାନ କରି ପ୍ରକାଶିତ । ତଥାପି ବହୁ ପଂକ୍ତିରେ ଜଣେ ନୈଷ୍ଠିକ ଭକ୍ତର ଯେଉଁ ଭାବୋଚ୍ଛ୍ୱାସ ଭୀମଙ୍କ ରଚନା ମଧ୍ୟରେ ପ୍ରକାଶିତ, ତାହା ଅପୂର୍ବ, ଅନୁଭବ୍ୟ ଓ ରସୋତ୍ତୀର୍ଣ୍ଣ ।

"ସାଧୁ ହୋଇ କରି ଗାଡକ ଠାବରେ ମାୟା କରିବାର ନୁହେଁ
ଅଶେଷ ବ୍ରହ୍ମାଣ୍ଡ ମହାଜନ ଅଟି ସମସ୍ତ ଚୋର ଅଟଇ ।
ତେଣୁକରି ମୁହିଁ ଅଶେ କରିଅଛୁ ଅନନ୍ତ ଭଣ୍ଡାରେ ସିନା
ଶତେ ପୁରୁଷକୁ ଅଣ୍ଟିବ ବୋଲି ମୁଁ ମନେ କରିଛୁ ଭାବନା ।
ସାଧୁ ଗଙ୍ଗାଜଳ ହୃଦୟ ନିର୍ମଳ ହେଲେ ଖାଦକକୁ ଲାଭ
ଖାତକ ଶୁଝିଲେ ସାଧୁ ନେଉଥିଲେ ସବୁଦିନେ ପ୍ରୀତି ଥିବ ।"

(ସ୍ତୁତିଚିନ୍ତାମଣି)

ଏହି ପଂକ୍ତି ସମୂହକୁ ଭକ୍ତ-ବତ୍ସଳ ଭୀମଙ୍କର ଭକ୍ତ-ପ୍ରାଣର ଏକ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ ।

ପୁଣି ଭୀମ ଭୋଇଙ୍କ ରଚନାରେ ଅଧୁନିକ ମାନବର ପୀଡ଼ିତ ଓ ବିକାରଗ୍ରସ୍ତ ମନର ଅଲେଖ୍ୟ ଅତି ସ୍ପଷ୍ଟ ଭାବରେ ଅଙ୍କିତ ।

"ସତ୍ୟକୁ ଛାଡ଼ିଲେ ଅମୃତ ମାଡ଼ିଲେ ଲାଗିଅଛୁ ନଷ୍ଟକୁଟ
ମିଛ ପସରାକୁ ଅଟୋରି ଅଛନ୍ତି ବସାଇ ବଜାର ହାଟ ।
ନ ଜାଣନ୍ତି ଭେଦ ନ ଜାଣନ୍ତି ସ୍ୱାଦ ଅମୃତରେ ନାହିଁ ମନ
ସାଧୁ ମଧୁରସ ଛାଡ଼ି ମୂଢ଼ଜନେ ବିଷ କରୁଛନ୍ତି ପାନ ।

(ସ୍ତୁତିଚିନ୍ତାମଣି)

ଏଥିପାଇଁ ଭକ୍ତକବି ଭୀମ ଭୋଇ ଧର୍ମ ଓ ଭକ୍ତିପୂତ ଜୀବନ ଯାପନ କରିବାକୁ ସଂସାରବାସୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି। କବି ଭୀମ ଭୋଇଙ୍କ ଭକ୍ତିବାଦ ନିଷ୍କ୍ରିୟ ଭକ୍ତିବାଦ ମାତ୍ର ନୁହେଁ, କିମ୍ବା ଈଶ୍ୱର ପାଦପଦ୍ମ ନିକଟରେ କର୍ମ ପ୍ରଚେଷ୍ଟାହୀନ ଶରଣାଗତ ମାତ୍ର ନୁହେଁ; ତାହା କର୍ମ-ପବିତ୍ର ଓ କର୍ମ-ଜଡ଼ିତ ଜଣେ ମନୁଷ୍ୟର ଭକ୍ତିବାଦ ବା ଆଧ୍ୟାତ୍ମିକ ଉନ୍ନତିକେନ୍ଦ୍ରିତ ଜୀବନ ପ୍ରଚେଷ୍ଟା । ତେଣୁ ଭୀମ ଭୋଇ ଗାଇଛନ୍ତି,—

"ବ୍ରହ୍ମ ମଧ୍ୟେ ସାର ଧର୍ମ ଧନୁର୍ଦ୍ଧର କର୍ମ ଅଟେ ଜୀବବର<br>
ଏକସ୍ଥାନେ ଥାଇ ସକଳ ଶରୀରେ ପୂରିଅଛୁ ତନ୍ମୟର ।"

(ସ୍ତୁତିଚିନ୍ତାମଣି)

ଅଥବା

"ମୋତ ହୋଇ କର୍ମ କାଟୁଥାଇ ପଛେ ନାମରେ ଅଶ୍ରିତ ହେଉ<br>
ତାହାର ବୃତ୍ତି ସେ କେମନ୍ତେ ଖଣ୍ଡିବ ରୋଜଗାର କରୁଥାଉ ।

× × ×

ଜାଡ଼ି ହୋଇ ଯେବେ ଦାଣ୍ଡେ ଉହୁଁରାଇ ବାଡ଼ଘର ପଛେ ଖଟୁ<br>
ଗୁରୁ ପାଦତଳେ ଚିତ୍ତବୃତ୍ତି ରଖି ଦୃଢ଼ଚିତ୍ତେ ନାମ ରଟୁ ।<br>
ତାହାର ବୃତ୍ତି ସେ ନ ରଖିବ ଯେବେ କେ କରିବ ସେ କର୍ମ<br>
ମୂର୍ଖ ଯେବେ ଗୁରୁନାମ କହୁଥିବ ଉଦ୍ଧାର କରିବେ ବ୍ରହ୍ମ ।"

(ସ୍ତୁତିଚିନ୍ତାମଣି)

କର୍ମଯୋଗର ପ୍ରଶସ୍ତି ଥାଇ ଏକାଧିକ ଅସଂଖ୍ୟ ପଦ ଭୀମ ଭୋଇଙ୍କର ରହିଅଛି । ସମଗ୍ର ଦୃଷ୍ଟିରେ ଦେଖିଲେ ଭୀମଭୋଇଙ୍କର ଚିନ୍ତାଧାରା ଧର୍ମ ଓ କର୍ମର ଏକ ମଧୁର ସମନ୍ୱୟ । ଭକ୍ତି ନାମରେ କର୍ମକୁ ଅବହେଳା କରିବାକୁ ବା କର୍ମ ନାମରେ ବିଷୟ

ଜଡ଼ିତ ରହି ଜଗ ଅଧ୍ୟାତ୍ମିକ ଚିନ୍ତାରୁ ବଞ୍ଚିତ ହେବାକୁ ସେ କେବେ ପରାମର୍ଶ ଦେଇ ନାହାନ୍ତି ।

ଭୀମ ଭୋଇଙ୍କର ଭକ୍ତ ଜୀବନର ଅବସାନ ହୋଇଅଛି । କିନ୍ତୁ କାଳବକ୍ଷରେ ଅଜ ଭାସ୍ୱର ହୋଇ ରହିଛି ତାଙ୍କ କବି ଜୀବନର ସ୍ମୃତି ସମ୍ପଦ । ସେ ସମ୍ପଦ କ୍ଷୟ ବା ମ୍ଳାନ ହେବାର ବସ୍ତୁ ନୁହେଁ । ଜଣେ ଭକ୍ତ ସାମ୍ପ୍ରଦାୟିକ ଭାବେ ତାଙ୍କୁ ସମ୍ମାନ ଦେଇପାରେ, ତାଙ୍କ ରଚନାବଳୀର ଭକ୍ତି-ସୌରଭରେ ନିଜର ପ୍ରାଣକୁ ମୁଗ୍ଧ ଓ ମହାସ୍ନାନ କରିପାରେ, କିନ୍ତୁ ଭକ୍ତ ଭୀମ ଭୋଇଙ୍କୁ ଛାଡ଼ିଦେଇ ମଧ୍ୟ କବି ଭୀମ ଭୋଇଙ୍କୁ ସମ୍ମାନ ଦେବାର, ତାଙ୍କର ଜୀବନ ନିଷ୍ଠ ପଦାବଳୀର ସୌନ୍ଦର୍ଯ୍ୟରେ ନିଜର ଆତ୍ମାକୁ ମୁଗ୍ଧ, ପ୍ରଶସ୍ତ କରିବାର ବହୁ ବିଭାବ ଓ ବିଭବ ତାଙ୍କ କୃତିରେ ଆମ ପାଇଁ ବିଦ୍ୟମାନ ।

ସ ମା ପ୍ତ



## ଅତବଡ଼ ଜଗନ୍ନାଥ ଦାସ ପ୍ରବନ୍ଧର ପରିଶିଷ୍ଟ

ଭକ୍ତ କବି ଜଗନ୍ନାଥ ଦାସ ସଂସ୍କୃତ ଭାଗବତର ଅକ୍ଷରିକ ଅନୁବାଦ କରିନାହାନ୍ତି । ଅନେକ ସ୍ଥଳରେ ମୌଳିକ ଶ୍ଳୋକର ତାତ୍ପର୍ଯ୍ୟକୁ ଉପେକ୍ଷା ନକରି ତାହାର ଆନୁସଙ୍ଗିକ ଭାବକୁ ପରିବର୍ତ୍ତିତ କରିଅଛନ୍ତି । ଏତଦ୍ଦ୍ୱାରା ମୌଳିକ ଶ୍ଳୋକର ତାତ୍ପର୍ଯ୍ୟ, ତାହାଙ୍କ ପ୍ରତିଭା ସ୍ପର୍ଶରେ ମନୋଜ୍ଞତର ହୋଇଅଛି । କେତେକ ସ୍ଥାନରେ ମୌଳିକ ଭାବକୁ ସ୍ୱୀୟ ଧର୍ମ-ବିଶ୍ୱାସ ଦୃଷ୍ଟିରୁ ମଧ୍ୟ ଆଂଶିକ ପରିବର୍ତ୍ତିତ କରିଅଛନ୍ତି । ସମ୍ପ୍ରତିଃ ଓଡ଼ିଆ ସାହିତ୍ୟରେ ସଂସ୍କୃତ ଭାଗବତର ଅକ୍ଷରିକ ଅନୁବାଦର ଅଭାବ ଅନୁଭବ କରି, ଜଗନ୍ନାଥ ଦାସଙ୍କ ଭାଗବତ ରଚିତ ହେବାର ପ୍ରାୟ ୨୦୦ ବର୍ଷ ପରେ ଦୀନବନ୍ଧୁ ଖାଡ଼ଙ୍ଗା ସଂସ୍କୃତ ଭାଗବତକୁ ଓଡ଼ିଆରେ ଅକ୍ଷରିକ ଅନୁବାଦ କରିଥିଲେ । ତୁଳନାତ୍ମକ ଅଧ୍ୟୟନ ଲାଗି ସଂସ୍କୃତ ଭାଗବତ ୧୧ଶ ସ୍କନ୍ଧ ୯ମ ଅଧ୍ୟାୟରୁ କେତୋଟି ପଦ ଓ ତାହାର ଖାଡ଼ଙ୍ଗାକୃତ ଅନୁବାଦ ଓ ଜଗନ୍ନାଥ ଦାସଙ୍କ ଅନୁବାଦ ଏଠାରେ ପ୍ରଦତ୍ତ ହେଲା ।

ଶ୍ରୀ ଅବଧୂତ ଉବାଚ

ସାମିଷଂ କୁରରଂ ଜଘ୍ନୁର୍ବଲିନୋଽନ୍ୟେ ନିରାମିଷାଃ
ତଦାମିଷଂ ପରିତ୍ୟଜ୍ୟ ସ ସୁଖଂ ସମବିନ୍ଦତ । ୧ ।

X X X

କ୍ୱଚିତ କୁମାରୀ ଅସ୍ମାନଂ ବୃଣାନାନ୍ ଗୃହମାଗତାନ୍
ସ୍ୱୟଂ ତାନର୍ହୟାମାସ କ୍ୱାପି ଯାତେଷୁ ବନ୍ଧୁଷୁ ।୨।
ତେଷାମଭ୍ୟବହାରାର୍ଥଂ ଶାଲୀନ୍ ରହସି ପାର୍ଥିବ
ଅବଘ୍ନନ୍ତ୍ୟାଃ ପ୍ରକୋଷ୍ଠସ୍ଥାଶ୍ଚକ୍ରୁଃ ଶଙ୍ଖାଃ ସ୍ୱନଂ ମହତ୍ ।୩।

ଖାଡଲାଙ୍କର ଅନୁବାଦ—

କୁରର ପକ୍ଷୀ ଆମିଷକୁ, ଗ୍ରହଣ କରନ୍ତେ ତାହାକୁ ।
ଅମିଷ ହୀନ ବଳବନ୍ତ, ଅନ୍ୟ ପକ୍ଷୀଏ କଲେ ହତ ।
ସେ ଅମିଷକୁ ସେ ଛାଡ଼ିଲା, ଉତ୍ତମ ସୁଖକୁ ଲଭିଲା ।
ସେ କୁରରକୁ ଗୁରୁ କଲି, ପ୍ରଭୁ ପ୍ରହ୍ଲାଦ ମୁଁ ଛାଡ଼ିଲି ।୧।

× × ×

ଶୁଣ ହେ ଯଦୁ ଦଣ୍ଡଧାରୀ, କେଉଣ ସମୟେ କୁମାରୀ ।
ନିଜ ବରଣ ନିମିତ୍ତରେ, ଗୃହେ ମିଳନ୍ତେ ଅସି ନରେ ।
ପିତା ମାତାଦି ବନ୍ଧୁମାନେ, କେହୁ ନଥାନ୍ତେ ତା ସଦନେ ।
ସେ ନରମାନଙ୍କୁ ଆପଣ, ସତ୍କାର କଲା ତତକ୍ଷଣ । ୨ ।
କୁମାରୀ ନରମାନଙ୍କର, ଭୋଜନ ନିମନ୍ତେ ସତ୍ୱର ।
ହେ ନୃପ ଏକାନ୍ତ ସ୍ଥଳରେ, ଧାନ୍ୟ କୁଟିଲି ଢେଙ୍କିରେ ।
ହସ୍ତରେ ଶଙ୍ଖ ଥିଲା ତାର, ଶବଦ କଲା ସେ ଅପାର । ୩ ।

ଜଗନ୍ନାଥ ଦାସଙ୍କର ଅନୁବାଦ—

ପକ୍ଷୀଙ୍କ ମଧ୍ୟେ ବଳସାର, ସ୍ୱଭାବେ ପ୍ରଚଣ୍ଡ କୁରର ।
ଅନ୍ୟେ ମାରଇ ନାନା ପକ୍ଷୀ, ଜୀବନ ପୋଷେ ମାଂସ ଭକ୍ଷି ।
ତାର ମହିମା କହେ ଶୁଣି, ବନ୍ଦୀ କରନ୍ତି ଧରେ ଆଣି ।
ସେ ପୁଣି ଅନ୍ୟ ପକ୍ଷୀ ମାରେ, ମାଂସ ଭକ୍ଷଇ ନେଇ ପରେ ।

କେବଳ ଶ୍ରମ ମାତ୍ର ସାର, ନ ଭକ୍ତି ଜଗତ ଆଧାର ।
ଏଣୁ ମୁଁ ତାର ଦୁଃଖ ଚାହିଁ, ତା ତହୁଁ ଗୁରୁ ଶିକ୍ଷା ପାଇ ।
ନ କର ବସ୍ତୁ ପରିଗ୍ରହ, ଏହା ଭ୍ରମଇ ଶୂନ୍ୟ ଦେହ । ୪ ।

× × × ×

ଏବେ ହେ। ଶୁଣ ମନ ସ୍ଥିରେ, ପୂର୍ବେ ସେ ଅବନ୍ତୀ ନଗରେ ।
ସୁସାଧୁ ସୁନ୍ଦର ଶରୀରେ, କନ୍ୟାଏ ଥିଲା ବିପ୍ର ଘରେ ।
ସେ କନ୍ୟା ବିଭାଅର୍ଥେ ବର, ବିପ୍ରେ ମିଳିଲେ ପାଞ୍ଚ ଗୁର ।
ସେ କନ୍ୟା ପିତା ସଙ୍ଗମେଳେ, ବିବାହ ପ୍ରସ୍ତାବ କରିଲେ ।
ବିସ୍ମୁର କର କନ୍ୟା ମାତା, ନିକଟେ ବସାଇ ଦୁହିତା ।
ତଣ୍ଡୁଳ ଅର୍ଥ ଧାନ୍ୟ ଦେଇ, ବୋଲଇ କନ୍ୟା ମୁଖ ଚାହିଁ ।
ବେଗେ ତୁ କୁଟ ହେଲେ ଭର, ତା ଶୁଣି ବ୍ରାହ୍ମଣ କୁମାରୀ ।
ନେଲେ ମୂଷଳ ଏକ କର, କୁଟଇ ବେନି କରେ ଧର ।
ଭାଙ୍ଗେ ତା ବଳୟ କଙ୍କଣ, କୁଟନ୍ତେ ବାଜେ ରୁଣ ଝୁଣ ।



